# ବିଶ୍ୱ ବିଖ୍ୟାତ
# କଥା ସାହିତ୍ୟ



ପୁରସ୍କୃତ ସାହିତ୍ୟ ମନ୍ଦିର

ପ୍ରକାଶକ :—
ସାରସ୍ୱତ ସାହିତ୍ୟ ମନ୍ଦିର
ଦରଘାବଜାର, କଟକ-୧

ମୁଦ୍ରାକର :—
ଶ୍ରୀ କମଳଲୋଚନ ଗରାବଡ଼୍
ନବମୁଦ୍ରଣ, କଟକ-୨

ଅନୁବାଦକ :—
ଶ୍ରୀ କୃଷ୍ଣପ୍ରସାଦ ପଟ୍ଟନାୟକ

ଶିଳ୍ପୀ :—
ଶ୍ରୀ ଅସିତ୍ ମୁଖାର୍ଜୀ

ପ୍ରଥମ ମୁଦ୍ରଣ
୧୯୭୫

ମୂଲ୍ୟ ୩-୫୦

# ବିଶ୍ୱବିଖ୍ୟାତ କଥା ସାହିତ୍ୟ

## ( ପ୍ରଥମ ତରଙ୍ଗ )

ଏଫ୍. ଇ. ସିଲାନ୍‌ପା
ଏ. କାବଲଚ୍‌ଶେଫ୍
ଇଭାନ ଓ୍ୱଷ୍ଟ୍ରିକୋଭ

ଲୁଇଗି ପିରାଣ୍ଡେଲୋ
ଆଲବର୍ଟ ମାଲଜ
ଲୁଇମାନୁଏଲ ପାର୍ବାନେଜା ଆରେଲ ପୋହଲ୍

ଓ. ହେନ୍ରୀ
ଷ୍ଟିଫେନ୍ ଲକକ୍
ଜର ମ୍ୟୁ ଗ୍ଲୁ

## କୃତଜ୍ଞତା

ଅନୁଦିତ ଗଳ୍ପଗୁଡ଼ିକ ଦୈନିକ "ମାତୃଭୂମି"ର ବିଭିନ୍ନ ରବିବାସରୀୟ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ସେଗୁଡ଼ିକର ସଂକଳନ ଲାଗି "ମାତୃଭୂମି"ର କର୍ତ୍ତୃପକ୍ଷ ଅନୁମତି ଦେଇଥିବାରୁ ସେମାନଙ୍କ ନିକଟରେ ଆମେ କୃତଜ୍ଞ ।

ପ୍ରକାଶକ
ଅନୁବାଦକ

# ଶେଷ ଆଷାଢ଼ର ସ୍ୱପ୍ନ

ଏଫ୍. ଇ. ସିଲନ୍‌ପା

[ ଫ୍ରାନ୍‌ସ ଏମିଲ ସିଲନ୍‌ପା ଫିନ୍‌ଲଣ୍ଡର ଅନ୍ୟତମ ବିଶିଷ୍ଟ ଔପନ୍ୟାସିକ । ତାଙ୍କର ଜନ୍ମ ୧୮୮୮ ଖ୍ରୀଷ୍ଟାବ୍ଦରେ । ବିଶ୍ୱର ସର୍ବଶ୍ରେଷ୍ଠ ସାହିତ୍ୟିକ ହିସାବରେ ସେ ୧୯୩୯ ଖ୍ରୀଷ୍ଟାବ୍ଦରେ ନୋବେଲ ପୁରସ୍କାର ଦ୍ୱାରା ସମ୍ମାନିତ ହୋଇଥିଲେ । ଦକ୍ଷିଣ ଫିନ୍‌ଲଣ୍ଡର ସ୍ୱାଧୀନ ଶିଳ୍ପୀଗୋଷ୍ଠୀର ସେ ଥିଲେ ଅନ୍ୟତମ ସହଯୋଗୀ । ତାଙ୍କର ଶ୍ରେଷ୍ଠ ଉପନ୍ୟାସ ମଧ୍ୟରୁ କେତୋଟି ହେଉଛି, "ପ୍ରାଣ ଓ ସୂର୍ଯ୍ୟ", "କୁମାରୀ ସିଲ୍ୟା", "ପୁରୁଷର ସରଣୀ" ଓ "ନମ୍ର ଐତିହ୍ୟ" । "ଶେଷ ଆଷାଢ଼ର ସ୍ୱପ୍ନ" ହେଉଛି ତାଙ୍କର "ସେଲ୍‌ମା କୋଲ୍ୟୁସ୍" ଗଳ୍ପର ଅନୁବାଦ । ]

ସେଲ୍‌ମା କୋଲ୍ୟୁସ୍‌କୁ ତାର ସାଥିମାନେ ବୁଝିପାରନ୍ତି ନାହିଁ ଆଦୌ, ବିଶେଷ କରି ଅଳ୍ପବୟସ୍କ ତରୁଣୀମାନେ ଯେଉଁମାନେ ନୂଆ ନୂଆ ଉନ୍ମାଦନାର ଅନ୍ୱେଷଣରେ ମାତିଥାନ୍ତି ସବୁବେଳେ । କୋଲ୍ୟୁସ୍‌ର ସେଇ କିବା ମନଭୁଲା, ଡାକଲା ଡାକଲା, ଭସା ଭସା, ଉଦାସ ଆଖି ଦିଟାକୁ ଦେଖିଲେ ମନରେ ଭ୍ରାନ୍ତି ଆସେ । ମନେ ହୁଏ କୋଲ୍ୟୁସ୍ ଯେମିତି ଏଇ ମାଟିର ଏଇ ଅତି ବିଦଘିଷା ଜୀବନର ଜଣେ ନିପୁଣା ନାରୀ ।

ଲୋକେ ଆଶ୍ଚର୍ଯ୍ୟ ହୁଅନ୍ତି ସେ କାହିଁକି ବାହା ନ ହୋଇ ରହିଗଲା ଏମିତି । ତଥାପି ତା ନାଁରେ ତ ଗାଁରେ ଜାଇଁ କେବେ ହେଲେ କେହି କିଛି କହିବାର ଶୁଣା ଯାଏନି । କୋଲ୍ୟୁସ୍ ଭଲ, ସବୁ ଦୃଷ୍ଟିରୁ ଭଲ । ତାକୁ ଦେଖିଲେ ମନ ଆପେ ଆପେ ଟାଣିହୋଇ ଯାଏ । ସେ ନାଚେ, ସୁନ୍ଦର ଭାବେ ନାଚେ । ତାର ବେଶଭୂଷା, ତାର ପ୍ରସାଧାନ ଉନ୍ନତ ରୁଚିର ପରିଚୟ ଦିଏ । ତା ସାଙ୍ଗକୁ ତାର ହାବଭାବ ଦେଖିଲେ ମନ ମୁଗ୍‌ଧ ହୋଇଯାଏ । ତାର ସେଇ ଆୟତ ଆଖିର ସେଇ ଶାନ୍ତ, ସ୍ୱଚ୍ଛ, ମନଟଣା ଦୃଷ୍ଟି ତଳେ ତଳେ କେତେ ଯେ ହୃଦୟ ହଜିଯାଇଛି କିଏ ଜାଣେ !

ଦିନେ ଗୋଟିଏ ସୁମଟୁର ସନ୍ଧ୍ୟାରେ ସେଲ୍ମା କୋଲପ୍ପାସ୍ ନାଚୁଥିଲା ବେଳେ ଭାରି ମଜାର ଘଟଣାଟିଏ ଘଟିଗଲା । ସେଦିନ ନୃତ୍ୟ ଶାଳାରେ ବହୁତରୁଣୀର ସମାଗମ ହୋଇଥିଲା । ଭଲ ଭଲ ତରୁଣମାନଙ୍କୁ ଜାମାତା ରୂପେ ପାଇବା ଆଶାରେ ମାଆମାନେ ତାଙ୍କର ଝିଅମାନଙ୍କୁ ନାଚିବା ପାଇଁ ଆଣିଥିଲେ । ଏମିତି ଜଣେ ମାଆ, ତାଙ୍କ ନାଁ ଶ୍ରୀମତୀ ଲର୍ଟୁକ୍କା, ସେ ମଧ୍ୟ ତାଙ୍କର ଝିଅ ଏଲ୍ମାକୁ ସାଙ୍ଗରେ ନେଇ ଆସିଥିଲେ । ଶ୍ରୀମତୀ ଲର୍ଟୁକ୍କା ଜଣେ ଧନୀ ବଣିକର ସ୍ତ୍ରୀ । ତାଙ୍କ ସାଙ୍ଗରେ ତାଙ୍କର ଭାବି ଜାମାତା ମଧ୍ୟ ଆସିଥିଲା । ଯୁବକଟି ଜଣେ ଗରିବ ଛାତ୍ର । ସେ ଅନେକ ସମୟରେ ଏହି ଧନୀ ବଣିକ ଘରେ ମଧ୍ୟ ରହେ । ତେଣୁ ଗାଁର ଲୋକେ ତାକୁ ହେୟ ଦୃଷ୍ଟିରେ ଦେଖନ୍ତି ।

ଏଲ୍ମା ଯେତେବେଳେ ଏହି ଯୁବକ ସହିତ ନାଚିବାକୁ ଆରମ୍ଭ କଲା ସେତେବେଳେ ଲୋକେ ଫୁସ୍ଫାସ୍ ହେବାକୁ ଆରମ୍ଭ କରିଦେଲେ । ଜାଣିଲା ଜାଣିଲା ଆଖିରେ ମାଆକୁ ଅନେଇ ଧୀରେ ଧୀରେ ମୁରୁକ ମୁରୁକ ହସିବାକୁ ଲାଗିଲେ । କିନ୍ତୁ ସଂଧ୍ୟା ଯେମିତି ଟିକିଏ ଗଭୀର ହୋଇ ଆସିଲା ହଠାତ୍ ଦେଖାଗଲା ଏଲ୍ମା ନିଶେଳା ହୋଇ ବସିଛି, ନିଜର ନିଃସଙ୍ଗତାରେ ମହାସ୍ଯାନ୍ ହୋଇ । ପାଖରେ ତାର ସେଇ ପ୍ରଣୟୀ ନାହିଁ । ଗୋଟାଏ ଅତି ଅସ୍ୱସ୍ତିକର ଅବକାଶ ବିତିଗଲା । ତାପରେ ହଠାତ୍ ସେଇ ଯୁବକଟିର ଆବିର୍ଭାବ ଘଟିଲା । ଏଥର ସାଙ୍ଗରେ ତାର ସେଲ୍ମା କୋଲପ୍ପାସ୍ । ଉଭୟେ ନାଚୁଥିଲେ ।

କ୍ରୋଧ ଆଉ ଆକ୍ରୋଶରେ ଆରକ୍ତ ହୋଇ ବଣିକର ସ୍ତ୍ରୀ ହଠାତ୍ ଉଠି ଚାଲିଗଲେ । ଏମିତି ଅତିବ୍ୟସ୍ତ ହୋଇ ସେ ଚାଲିଗଲେ ଯେ ସେ ଦ୍ୱାର ପାଖରେ ଯାଇ ପହଞ୍ଚିଲା ବେଳକୁ ବେଶଭୂଷା ତାଙ୍କର ଅବିନ୍ୟସ୍ତ ହୋଇ ଯାଇଥିଲା । ତାଙ୍କ ସଙ୍ଗେ ସଙ୍ଗେ ତାଙ୍କର କନ୍ୟା ଏଲ୍ମା ମଧ୍ୟ ଚାଲିଲା ତାର ସେଇ ଅଷ୍ଟାଦଶ ବର୍ଷର ସମସ୍ତ ନିର୍ବୋଧତା ଓ ସରଳତା ନେଇ—କାରଣ ପ୍ରେମ ସମ୍ପର୍କରେ ମାଆ ତାକୁ ଯେତିକି ଶିଖେଇଛନ୍ତି ତାଠୁଁ ଆଉ ବେଶି କିଛି ସେ ଜାଣେନା । ଏହି ଅଜୁଆ ପରିସ୍ଥିତି ସମ୍ପର୍କରେ ମାଆଙ୍କର ସକ୍ରୋଧ ମନ୍ତବ୍ୟ ଶୁଣି ଶୁଣି ସେ ଚାଲିଲା ମାଆଙ୍କ ପଛେ ପଛେ ।

ଇତ୍ୟବସରରେ ଜଣେ ସଦସ୍ୟ ବନ୍ଧୁ ଯୁବକଟିର କାନ ପାଖେ ଗୁଣୁ ଗୁଣୁ ଜଣାଇଦେଲା ଶ୍ରୀମତୀ ଲିଟୁକ୍‌କା ପ୍ରାୟ ଘରକୁ ଫେରିଯିବା ଉପରେ ।

ହତଭାଗା ଯୁବକଟି ବହୁତ ଚେଷ୍ଟା କଲା ପ୍ରକୃତ ପରିସ୍ଥିତିଟା କଣ ବୁଝାଇ ଦେବା ପାଇଁ । କିନ୍ତୁ ତାର ସମସ୍ତ ଅନୁନୟ ବିନୟ, ସମସ୍ତ କୈଫିୟତ୍ ବ୍ୟର୍ଥ ହୋଇଗଲା । ଶ୍ରୀମତୀ ଲିଟୁକ୍‌କା ଚାଲିଗଲେ ।

ସେଲ୍‌ମା କୋଲିୟୁସ୍ କିନ୍ତୁ ଟିକେ ସୁଦ୍ଧା ବିଚଳିତ ହୋଇ ଉଠିଲା ନାହିଁ ଏଇ ଘଟଣାରେ । ସେ ସଙ୍ଗେ ସଙ୍ଗେ ଭୁଲିଗଲା ଘଟଣାଟି । ଗୋଟାଏ ମୁହୂର୍ତ୍ତ ପାଇଁବି ସେକଥା ଆଉ ତା ମନରେ ଉଠିଲା ନାହିଁ । ପର ମୁହୂର୍ତ୍ତରେ ଦେଖାଗଲା ସେ ନାଚୁଛି ଇଲ୍‌ମାରି ସାଲେନେନ୍ ସାଙ୍ଗରେ । ଏମିତି ଘଟଣାରେ ସେ କେବେ ବ୍ୟସ୍ତ ବିବ୍ରତ ହୁଏ ନାହିଁ । ଧୀର ଶାନ୍ତ ଭାବେ, ଆପଣାର ଆନନ୍ଦରେ ଆପେ ତନ୍ମୟ ହୋଇ ସେ ନାଚିବାକୁ ଲାଗିଲା । ନୃତ୍ୟର ତାଳେ ତାଳେ ବିତିଗଲା ସଂଧ୍ୟା, ହଜିଗଲା ରାତ୍ରିର ଅନ୍ଧକାର ଆସନ୍ନ ଊଷାର କୋମଳ ଆଲୋକରେ । ସେଲ୍‌ମା ଫେରିଗଲା ଘରକୁ ତାର ଭାଇ ଆଉ ତାର ସାନ ଭଉଣୀକୁ ସାଙ୍ଗରେ ନେଇ, ବିଗତ ସଂଧ୍ୟାର ବିଳାସରେ ବିଭୋର ହୋଇ ।

ସେଲ୍‌ମା କୋଲିୟୁସ୍ ଘରଟି ଅତି ମନୋରମ ପରିବେଶ ଭିତରେ ଅବସ୍ଥିତ । ଚାରିପଟେ ଉନ୍ମୁକ୍ତ ପ୍ରକୃତିର ଅପରୂପ ଆଶ୍ରୟ । ଯେ କୌଣସି ଦିଗରୁ ଦୂରରୁ ଦେଖାଯାଏ ଘରଟି । ଯେ କେହି ପଥିକ ସେହିବାଟେ ଚାଲିଗଲେ ମୁହୂର୍ତ୍ତେ ଘରଟିକୁ ଅନେଇ ଦେଇ ମୁଗ୍ଧ ଆଖିରେ ଠିଆ ହୋଇଯାଏ ।

ବୈଶାଖର ଅସରାଏ ଅଦିନିଆ ମେଘ ପରେ ଘରଟି ଆହୁରି ଚମତ୍କାର ଦିଶେ । ଧଳା ଧଳା କାନ୍ଥ ଉପରେ ଲାଲ ଲାଲ ଛାତ ଆହୁରି ସୁସ୍ପଷ୍ଟ ହୋଇ ଉଠେ ଚତୁର୍ଦ୍ଦିଗର ଭିଜାଭିଜା ସବୁଜ ଲତା ଗୁଳ୍ମର ଆବେଷ୍ଟନୀ ଭିତରେ । ଉପରେ ନୀଳ ଆକାଶ—ତାରି ତଳେ ତଳେ ଜଳଭରା ମ୍ଲାନ ମେଘର ମହୋତ୍ସବ, ଭାସି ଭାସି ଯାଏ, ଉଭେଇ ଯାଏ ଘରଟିକୁ ଅପରୂପ ଲାବଣ୍ୟରେ ଆହୁରି ଲୋଭନୀୟ କରିଦେଇ ।

ଦିନେ ଜଣେ ଯୁବକ ( ଉପର କଥିତ ଯୁବକ ନୁହେଁ ) ଲକ୍ଷ୍ୟହୀନ ଭାବରେ ବୁଲୁ ବୁଲୁ ପଥଭ୍ରାନ୍ତ ହୋଇ ଚାଲି ଆସିଲା ଏହି ଘରର ଫାଟକ

ପାଖକୁ । ହୁଏତ ଏଇ ଘରର ଆକର୍ଷଣ ତାର ଅଜ୍ଞାତସାରରେ ତାକୁ ଟାଣିଆଣିଲା ସେଇଠିକି । ସେଲ୍‌ମା କୋଲିୟୁାସ୍‌କୁ ସେ ଚିହ୍ନେ । ତାର ଜ୍ୟେଷ୍ଠ ଭଉଣୀ ଯେଉଁ ସ୍କୁଲରେ ପଢ଼େ ତାଙ୍କୁ ମଧ୍ୟ ସେ ଜାଣେ । କିନ୍ତୁ ସେମାନଙ୍କ ସହିତ ତାର ପରିଚୟ ନାହିଁ । ଫାଟକ ପାଖରେ ଠିଆ ହୋଇ ଏହି ସୁନ୍ଦର ପୁରାତନ କୋଠାଟିକୁ ଅନେଇ ଅନେଇ ତାର ମନେ ହେଲା ଯେତେ ଯେମିତି ସେଇ ଦୁଇ ଭଉଣୀ ଧୀରେ ଧୀରେ ତାର ଭିତରେ କକ୍ଷରୁ କକ୍ଷକୁ ଯାତାୟତ କରୁଛନ୍ତି । ସେଲ୍‌ମାର ଭାଇ ଭର୍‌ହୋ କୋଲିୟୁାସ୍ ମେଡ଼ିକାଲ କଲେଜର ଛାତ୍ର, ତାଙ୍କୁ ମଧ୍ୟ ସେ ସାମାନ୍ୟ ଭାବେ ଚିହ୍ନେ ।

ସେଦିନ କିନ୍ତୁ ଘରେ କେହି ଥିଲା ପରି ମନେ ହେଉ ନଥିଲା । ବାଲ୍‌କୋନିର ଧାରେ ଧାରେ ଲତାୟିତ ଗୋଲାପ ଆଉ ଦ୍ରାକ୍ଷାର କୁଞ୍ଜ ମଧ୍ୟ ଏହି ରେଲିଙ୍ଗର ଆଡ଼ୁଆଳରୁ ବଡ଼ ସୁଦୂର, ବଡ଼ ଅପ୍ରକୃତ ମନେ ହେଉଥିଲା ।

ଛାତ୍ରଟି ଯେତିକି ନିରେଖି ନିରେଖି ଚାହିଁଲା ସେତିକି ସେତିକି ସ୍ପଷ୍ଟ ଭାବେ ସେ ଦେଖି ପାରିଲା ଦୂରରେ ଘର ମଥାମଟେ ଆକାଶଛୁଆଁ ଝାଉଁ ଗଛର ଅରଣ୍ୟ ଧାଡ଼ ଧାଡ଼ ହୋଇ ଲମ୍ବି ଯାଇଛି ଦୂର ନ୍‌ଦର ସୀମାନ୍ତ ନିକଟକୁ । ନିଜର ସ୍ୱପ୍ନରେ ବିଭୋର ହୋଇ ନିଜର ଅଜାଣତରେ ସେ ଚାଲି ଆସିଲା ଫାଟକ ଡେଇଁ ଘରର ବଗିଚା ଭିତରକୁ । ଏମିତି ଗୋଟିଏ ଗୋଟିଏ ଜ୍ୟେଷ୍ଠ ଘଟଣା, ଯାହା ଭିତରୁହିଁ ଲମ୍ବି ଯାଏ ବହୁ ଘଟଣାର ସୋତ—ଯେମିତି ପୁଷ୍ପ ଭିତରେ ପୁଷ୍ପର ପ୍ରାଣକୋଷ ଉନ୍ମେଷିତ ହୋଇ ଉଠେ, ବାୟୁକୁ ବିଭୋର କରିଦିଏ ଆପଣାର ସୁରଭିରେ, ଆପଣାର ସମ୍ଭାବନାରେ—ଯେମିତି ଶ୍ୟାମଳ ଶସ୍ୟ କ୍ଷେତରେ ଫସଲର ଫୁଆର ତାଆର ଶାଣିତ ଅଧର ଲାଗି ପରିପକ୍ୱ ହୋଇ ଉଠି ପ୍ରକୃତିକୁ ଭରିଦିଏ ପୂର୍ଣ୍ଣତାରେ ।

ହଠାତ୍ ଗୋଟିଏ ମୁହୂର୍ତ୍ତ ପାଇଁ ଦୋତାଲା ଉପରର ବାତାୟନ ପଥରେ ଝଲସି ଉଠିଲା ସେଲ୍‌ମାର ଛାଇ । ଗୋଟିଏ ମୁହୂର୍ତ୍ତ ପାଇଁ । ସେଇ ଗୋଟିଏ ମୁହୂର୍ତ୍ତ ଛାତ୍ରଟି ପକ୍ଷରେ ଯଥେଷ୍ଟ ସେଲ୍‌ମାର ସେଇ ସୁନ୍ଦର ସ୍ୱର୍ଣ୍ଣାଭ କେଶଗୁଚ୍ଛକୁ ଚିହ୍ନି ନେବା ପାଇଁ, ଆଲୋକର ପଛଭୂମିରେ ତାର ସେଇ କୃଷ୍ଣାଭ ଆକୃତିର ମାପଟାକୁ ଦେଖି ନେବା ପାଇଁ । ପବନରେ ଝୁଲି ପଡ଼ିଥିବା ଶ୍ୱେତମାଳ ଛାଦଟିକୁ ପୁଣି ବାନ୍ଧି ଦେଇ ସେଲ୍‌ମା ଝରକା

ପାଖରେ ଅଟକଗଲ—ଭାବମଗ୍ନ ଦୃଷ୍ଟିରେ ଗୁହଁରହିଲ ଆଖିତଳେ ବିଚ୍ଛୁରିତ ହୋଇ ରହିଥିବା ଶାନ୍ତ ସ୍ନିଗ୍‌ଧ ଶୋଭାର ସମ୍ଭାର ଆଡ଼କୁ ।

କୋଲଯ୍ୟାସ୍‌ର ଫାଟକ ପାଖରେ ଅଟକେ ଗଲା ବେଳେ ଠିକ୍ ଏପରି ଏକ ଦୃଶ୍ୟର ଆଶାରେହିଁ ପ୍ରାଣଟି ଆକୁଳ ହୋଇ ଉଠିଥିଲ ।

ଭଏନୋ କୋଲଯ୍ୟାସ୍‌ର ଷୋଡ଼ଶ ଜନ୍ମତିଥି ଉଦଯାପିତ ହେବାର ଦୁଇଦିନ ବିତିଗଲଣି । ତଥାପି ସେଇ ଉତ୍ସବର ସ୍ମାରକୀ ସତ୍ତା ଆହୁରି ଲିଭିନାହିଁ; ଗୃହଆଡ଼େ ଜୀବନ୍ତ ହୋଇ ରହିଛି ।

ନିତିଦିନିଆ ଜୀବନର କୋଳାହଳ ଘରଟିକୁ ପୁଣି ଆଚ୍ଛନ୍ନ କରି ଦେଲଣି । ତଥାପି ସେଦିନର ଉତ୍ସବର ଛାପ ସେଲ୍‌ମା ମନରୁ ଆହୁରି ଲିଭିନାହିଁ ।

ସମସ୍ତେ ଚାଲିଗଲେଣି—ଆମନ୍ତ୍ରିତ ଅତିଥିମାନେ, ତାର ସ୍କୁଲ୍‌ସାଥୀ, ଆଉ ପୁଝାରୀ ଚାକରବାକର ସମସ୍ତେ ।

ଗୋଷେଇ ଶାଳାରେ ପୁଣି ସେଇ ନିତିଦିନିଆ ଚରିଚିତ ଶବ୍ଦ; ରାନ୍ଧୁଣୀ ଆରମ୍ଭ କରିଦେଲଣି ତାର ଗତବନ୍ଧା ଘୋଷେଇ କାମ ।

ଭଏନୋ ବି ନାହିଁ । ସବୁଦିନ ସେ ଯେମିତି ଚାଲିଯାଏ ବହୁ ସମୟ ଧରି ବଗିଚା ଭିତରର ତାର ସେଇ କଣ୍ଢେଇ ଘର ଭିତରକୁ ଆଜି ବି ସେମିତି ସେ ଚାଲିଯାଇଛି ସେଇଠିକି ।

ଶେଷ ଆଷାଢ଼ର ଏହି ଉଷୁମ ଅପରାହ୍ନରେ ମନେ ହେଉଛି ସମଗ୍ର ଘରଟି ଯେମିତି ସୁପ୍ତ, ଘରର ସବୁକିଛି ଯେମିତି ମୋହାଚ୍ଛନ୍ନ ।

କାଳର ଗତି ଥମି ଯାଇଛି । ତଥାପି ଧୀରେ ଧୀରେ, ନିଃଶବ୍ଦରେ, ମଣିଷର ଅଲକ୍ଷ୍ୟରେ ବିତିଯାଉଛି ସମୟ । ଚୌକିର ବାହୁ ଉପରେ ବସି ପଡ଼ି ଭାବିଲ ସେଲ୍‌ମା—"ଭଏନୋକୁ ଆସି ଷୋଳବର୍ଷ ହୋଇଗଲେ । ବେଶ୍ ତ ବଡ଼ ଝିଅଟିଏ ହୋଇଗଲଣି । ଆଉ ମତେ ଆସି ଅଠେଇଶ ଦେଲ ! ତା ଅର୍ଥ ? ତା ଅର୍ଥ ମୋ ଉପରେ ଅଠେଇଶଟି ବସନ୍ତ ବୋହିଗଲଣି—ଆଉ ଦୁଇଟି ପରେ ତିରିଶ ହୋଇଯିବା କେଡ଼େ ସୁଖୀ ମୁଁ । ଏଇଠି କଣ ମଣିଷ କେବେ ବୁଢ଼ୀ ହୋଇପାରେ, ଏଇଠି କଣ କେବେ କାହାକୁ ଜରାର ସ୍ପର୍ଶ ଲାଗିପାରେ ? ନାଁ, ତା ଅସମ୍ଭବ ! ମୁଁ ତ । କଦାପି ବିଶ୍ୱାସ କରି ପାରିବ ନାହିଁ ।" ମନକୁ ମନ କହିଲ ସେଲ୍‌ମା ।

ସେଲ୍‌ମା ଭାବୁଛି ବସି ବସି । ଭାବନାର ସ୍ରୋତର ଶେଷ ନାହିଁ । ମନର ଭାବନାର ଛାଇ ଗୁଡ଼ାକ ବେଳକୁ ବେଳ ଆହୁରି ଆହୁରି ଅସ୍ପଷ୍ଟ ହୋଇ ଉଠୁଛି ସତେ ଯେମିତି ସେଗୁଡ଼ିକୁ ନେଇ ମନ ତାର କେଉଁ ଅନ୍ଧାରି ଅନ୍ତଃପୁର ଭିତରେ ଗୋପନରେ ସାଇତି ଦେଇଛି । ଜୀବନରେ ସକଳ ସୁଖ ସେ ପାଇଛି । ଯାହା ଚାହିଁଛି ତା ସେ ପାଇଛି । ସେ ସୁନ୍ଦରୀ, ସେ ସମସ୍ତଙ୍କର ପ୍ରିୟ ପାତ୍ରୀ···ତଥାପି କିଛି ଗୋଟାଏ ସେ ଯେମିତି ପାଇନି··· କିଛି ଗୋଟାଏ ଯେମିତି ହଜି ଯାଇଛି···ସେ ଜାଣେନା ସେଇଟା କଣ !

ଭାଇନୋର ଜନ୍ମଦିନ ଚାଲିଗଲାଣି । କିନ୍ତୁ ତାର ବଡ଼ ଉଜଣୀର ଆଖିରୁ ଆଶାର ଆଲୁଅ ଆହୁରି ଲିଭିନାହିଁ । କିଛି ଗୋଟାଏ ଯେମିତି ସେ ପ୍ରତ୍ୟାଶା କରୁଛି···କିଛି ଗୋଟାଏ ଯେମିତି ଘଟିଯିବ···ଗୋଟାଏ ଅସାଧାରଣ, ଗୋଟାଏ ବିସ୍ମୟକର ଘଟଣାର ଅସ୍ପଷ୍ଟ ଆଶା ତାର ଆଖିରେ ।

ଗୃହର କର୍ତ୍ତ୍ରୀ ହିସାବରେ ଜନ୍ମୋତ୍ସବର ଅପୂର୍ବ ସାଫଲ୍ୟରେ ବେଶ୍ ସନ୍ତୁଷ୍ଟ ହେବାର କଥା ତାର । କିନ୍ତୁ ଦିନ ପରେ ଦିନ ସେ କେବଳ ଲକ୍ଷ୍ୟହୀନ ଭାବେ ପଦଚାରଣା କରୁଛି କକ୍ଷରୁ କକ୍ଷକୁ ସତେ ଯେମିତି ସେ ଭୁଲିଯାଇଛି ତାର ସମସ୍ତ ଗୃହକର୍ମ । ତାକୁ ଖାଲି ଲାଗୁଛି ଜନ୍ମୋତ୍ସବରେ କେଉଁଠି ଯେମିତି କିଛି ବ୍ୟାଘାତ ସୃଷ୍ଟି ହୋଇଗଲା, କେଉଁଠି ଯେମିତି କିଛି ହବାର ଥିଲା ଯାହା ହେଲା ନାହିଁ ।

ସେଲ୍‌ମା ବସିଛି, ଗୁଣୁ ଗୁଣୁ ହୋଇ ଗାଉଛି । କଣ୍ଠରେ ତାର ଗୋଟାଏ ଅତି ପୁରୁଣା ହଜିଗଲା ହଜିଗଲା ସ୍ୱରର ରାଗିଣୀ ।

ହଠାତ୍ ଗୋଟାଏ ସ୍ୱପ୍ନରେ ସେ ତନ୍ମୟ ହୋଇ ଉଠିଲା । ସ୍ୱପ୍ନଟା ଜୀବନ୍ତ ହୋଇ ଉଠି, ବାସ୍ତବ ହୋଇ ଉଠି ତାକୁ ଆଛନ୍ନ ଓ ଅଭିଭୂତ କରିଦେଲା । ମନେ ହେଲା କେଉଁ ଏକ ଶେଷ ଆଷାଢ଼ର ସନ୍ଧ୍ୟା ଯେମିତି ମିଳେଇ ଯାଇଛି ଧୀରେ ଧୀରେ ମଧ୍ୟରାତ୍ରୀ ଭିତରେ ଆଉ ସେଇ ମଧ୍ୟ ରାତ୍ରୀର ଅନ୍ଧକାର ଭିତରେ ଉଜ୍ଜୀବିତ ହୋଇ ଉଠିଛି ତାର ସ୍ୱପ୍ନ···ଯେମିତି ସତ୍ୟ ପାଲଟି ଯାଇଛି ସେ ସ୍ୱପ୍ନ ସେଇ ଅନ୍ଧକାରର ସ୍ପର୍ଶରେ ।

ପ୍ରତ୍ୟେକଟି ମୁହୂର୍ତ୍ତ, ପ୍ରତ୍ୟେକଟି ଘଟଣା ସଜୀବତ ହୋଇ ଉଠିଲା ମୂର୍ତ୍ତିମନ୍ତ ହୋଇ ଉଠିଲା ତା ଆଖି ଆଗରେ । ସ୍ୱମଧୁର ସଙ୍ଗୀତର ମୂର୍ଚ୍ଛନାରେ ମଣିଷ ଯେମିତି ମନ୍ତ୍ରମୁଗ୍ଧ ହୋଇପଡ଼େ ସେଲ୍‌ମା ସେମିତି ତାର ଏହି ତରଙ୍ଗିତ ଚେତନାରେ ତନ୍ମୟ ହୋଇ ଉଠିଲା । ତାର ସମସ୍ତ ମାନସସତ୍ତା ଏହି ଚେତନାରେ ରଞ୍ଜିତ ହୋଇ ଉଠିଲା । ମନେହେଲା ପ୍ରକୃତିର ପ୍ରତ୍ୟେକଟି ଅଣୁରେ ଅଣୁରେ ଯେମିତି ଅନୁରଣିତ ହୋଇ ଉଠୁଛି ତାର ପ୍ରତିଧ୍ୱନି ।

ଆଷାଢ଼ର ଶେଷ ଦିନଗୁଡ଼ିକ । ଭାରି ସୁନ୍ଦର ଏଇ ମାସଟି । ପ୍ରକୃତିର ପ୍ରାଣ ପ୍ରାଚୁର୍ଯ୍ୟରେ ଭରା ପୃଥିବୀର ଅଙ୍ଗନ । ଗଛଆଡ଼େ ଅସୁମାରି କୁସୁମର କମନୀୟ ଆଭା, ଫଳଭରା ଉଦ୍ୟାନର ଉତ୍ସବ ଆଉ ପରିପକ୍ୱ ଫସଲର ପ୍ଲାବନ । ଏହି ଦିନ ଗୁଡିକରେ ସୂର୍ଯ୍ୟର ଉତ୍ତାପ ବେଶ୍ ଆନନ୍ଦ ଦାୟକ ମନେ ହୁଏ । ଦିନର ଆଲୋକ ବିଲମ୍ବିତ ହୋଇଯାଏ ସନ୍ଧ୍ୟାର ଧୂସର ଅନ୍ଧାର ଭିତରକୁ । ବେଶ୍ ସ୍ୱଳ୍ପ ଏଇ ଶେଷ ଆଷାଢ଼ର ଦିନ ଗୁଡ଼ିକ । ତଥାପି ସେ ଚାଲିଯାଏ ବିଦ୍ୟୁତ୍‌ର ଗତିରେ ଜୀବନ ଯେମିତି ଝରି ଝରି ଯାଏ, ଦିନ ପରେ ଦିନ ବର୍ଷ ପରେ ବର୍ଷ ଯେମିତି ଉଭେଇ ଯାଏ । ଫସଲ ପାଚେ, ଶିଶୁ କିଶୋର ହୁଏ, ତରୁଣ ହୁଏ, ନିଜ ନିଜର ଅଲକ୍ଷ୍ୟମୟ ନିର୍ଦ୍ଦେଶରେ ।

ଏମିତି ଗୋଟିଏ ଶେଷ ଆଷାଢ଼ର ଚେତନା ଆଜି ଜାଗିଉଠିଛି ସେଲ୍‌ମା କୋଲସ୍ୱାସ୍‌ର ପ୍ରାଣରେ—ତାର ପାଇଁ ଆଣି ଦେଇଛି ଆଷାଢର ସ୍ୱଚ୍ଛ, ଶୁଭ୍ର, ସ୍ନିଗ୍ଧ ପୂର୍ଣ୍ଣତା, ତାର ପ୍ରହେଳିକାମୟ ପ୍ରାଣର ପ୍ରତିଶ୍ରୁତି ।

ସେଲ୍‌ମା ଭାବୁଚି—"ଆଉ ତ ଏମିତି ବୟସ୍କ ମୁଁ କେବେ ହୋଇ ପାରିବି ନାହିଁ ଆଜି ଯେମିତି ବୟସ୍କ ମନେ ହେଉଛି ମତେ । କିନ୍ତୁ ମୁଁ ବି କେମିତି ପରିପକ୍ୱ ହୋଇ ଉଠିବ ଏଇ ଚୂଡ଼ାନ୍ତ ପରିପୂର୍ଣ୍ଣତାରେ । ହାୟ ! ଦିନେ ନା ଦିନେ ତ ମତେ ମରିବାକୁ ପଡ଼ିବ······।"

ମରଣର ଭାବନା ଆଗରେ ସବୁ କିଛି ଉଭେଇଗଲା ତା ମୁଣ୍ଡ ଭିତରୁ ଗୋଟାଏ ମୁହୂର୍ତ୍ତ ପାଇଁ । ଅସ୍ତଗାମୀ ସବିତା ଯେମିତି ହଜିଯାଏ ପ୍ରତିଚୀର ମେଘ ଅନ୍ତରାଳରେ । ହଠାତ୍ ଗୋଟାଏ ମୁହୂର୍ତ୍ତ ପାଇଁକି ତାର ସମସ୍ତ ସୁଖର ସ୍ୱପ୍ନ ଝୁଲି ରହିଲା ଶୂନ୍ୟରେ ଗୋଟାଏ ଅସ୍ପଷ୍ଟ ଆଶାର ଅସ୍ଥିରତା ଭିତରେ ।

ଏଇ ସୁନ୍ଦର ଅପରାହ୍ଣ, ଯିଏ ଧୀରେ ଧୀରେ ଆହ୍ୱାନ ଏକ କମନୀୟ ସନ୍ଧ୍ୟା ନେଇ ଆସିବ ତା ପଛେ ପଛେ, ସେଇ ଅପରାହ୍ଣ ମନେ ହେଲା ଯେମିତି ଏକ ଅତି ଦୁର୍ଲଭ ଅତି ଅପ୍ରତ୍ୟାଶିତ ଘଟଣାଟିଏ ଲୁଚେଇ ରଖିଛି ତା ବୁକୁ ଭିତରେ ସେଲ୍‌ମା ପାଇଁ। ପ୍ରାଣର ଆନନ୍ଦମ ଚେତନା ଦେଇ ସେଲ୍‌ମା ଅନୁଭବ କରିପାରିଲା ଏକଥା।

କିଛି ନାଁ କିଛି ଗୋଟାଏ ନିଶ୍ଚୟ ଘଟିବ! ଧୀରେ ଧୀରେ ଏଇ ଘଟଣାଟି ରୂପ ନେଇ ଉଠୁଛି ଜନ୍ମୋତ୍ସବ ପରି। ଗୋଟାଏ ମଧୁମୟ ଅସ୍ଥିରତାରେ ଆନ୍ଦୋଳିତ ହୋଇ ଉଠୁଛି ସେଲ୍‌ମାର ସ୍ୱଭାବ-ସୁଲଭ ପ୍ରଶାନ୍ତି। ସେ ବୋଧ କରୁଛି ଯେମିତି ଗୋଟାଏ ଅଦ୍ଭୁତ ଘଟଣା ଘଟିବାକୁ ଯାଉଛି, ଯେଉଁ ଘଟଣା ତାର ଜୀବନ ସ୍ରୋତକୁ ବଦଳାଇ ଦେବ, ଯେଉଁ ଘଟଣାକୁ ଆଉ ରୋଧ କରିପାଇ ପାରିବ ନାହିଁ। ସେଇ ଅନିବାର୍ଯ୍ୟ ମୁହୂର୍ତ୍ତ ହୁଏତ ଆସନ୍ନ। ଭାବୁଛି ସେଲ୍‌ମା, "ସତେ କଣ ସେହି ତରୁଣ, ସେହି ସ୍ୱପ୍ନର ମଣିଷ ମୋର, ବାଟ ଭୁଲି ଚାଲି ଆସିବ ଆମ ଘରକୁ ? ସତେ କଣ ସେ ଆସିବ ଯାହାର ପାଇଁ ଯୁଗ ଯୁଗର ପ୍ରତୀକ୍ଷାରେ ଆବେଗ ଆକୁଳ ହୋଇ ଉଠୁଛି ମୋର ଅସ୍ତିତ୍ୱ ? କିଏ ଜାଣେ! କିଏ କହି ପାରିବ! ପ୍ରାଣର ଏଇ ପ୍ରଚ୍ଛନ୍ନ ବାସନା କଣ ସତେ ପୂର୍ଣ୍ଣ ହେବ ? ଆଃ!"

ଏହି ଶେଷ ଆଷାଢ଼ର ସନ୍ଧ୍ୟାରେ ଜଣେ ଅଜଣା ବିଦେଶୀ ଆସି ହଠାତ୍ କୋଲାହାସ୍ ଘରେ ପହଞ୍ଚିଗଲା। ଘରେ କେହି ନାହାନ୍ତି। ଗୃହଆଡ଼ ଶୂନଶାନ୍। ତାକୁ ପାଛୋଟି ନେବାପାଇଁ କେହି ନାହିଁ। ବିଶାଳ ପ୍ରବେଶ କକ୍ଷଟି ନିର୍ଜନ। କେହି ତାକୁ ସ୍ୱାଗତ କଲେ ନାହିଁ। ତଥାପି ଏହି ପ୍ରାଚୀନ ପ୍ରାସାଦର ଅସ୍ତିତ୍ୱ ବି ତା ପକ୍ଷରେ ଏକ ବିରାଟ ସ୍ୱାଗତିକା ପରି ମନେ ହେଲା। ଘରଟିକୁ ସେ ଭଲରୂପେ ଜାଣେ। ଏହି ଘରର ପ୍ରାଚୀର ଭିତରେ ଅବରୁଦ୍ଧ ଅତୀତର ବହୁ ହଜିଗଲା ଦିନର ସ୍ମୃତି ପୁଣି ତାର ପ୍ରାଣରେ ଜାଗରୁକ ହୋଇ ଉଠିଲା।

କକ୍ଷ ପରେ କକ୍ଷ ଅତିକ୍ରମ କରି ସେ ଆଗେଇ ଚାଲିଲା। ଅବଶେଷରେ ସେ ଆସି ପହଞ୍ଚିଲା ବୈଠକଖାନାରେ। ସେଇଠି ଟିକଏ ଥମିଯାଇ ସେ ତନ୍ମୟ ହୋଇ ଅନେଇ ରହିଲା ଘଡ଼ିଆଡ଼କୁ। କାନ୍ଥରେ ସେଇ ଘଣ୍ଟା, ସେଇ ଟିକ୍ ଟିକ୍ ଶବ୍ଦ—ତାର ପ୍ରତି ଶବ୍ଦରେ ପୁଣି ଉଜ୍ଜୀବିତ ହୋଇ ଉଠୁଛି ଅତୀତର ସେଇ ମରିଗଲା ମୁହୂର୍ତ୍ତ ଗୁଡ଼ାକ, ଦିନ

ଗୁଡ଼ାକ । ଟେବୁଲ ଉପରେ ସେମିତି ପଡ଼ି ରହିଛି ସବୁ ଦିନର ସେଇ ସିଲେଇ କାମ, ପିଆନୋ ଉପରେ ସେମିତି ଥୁଆ ହୋଇଛି ସେଇ ସ୍ୱରଲିପି । ହାତର ସ୍ପର୍ଶରେ ସେ ଅନୁଭବ କରିନେଲା ସେ ଗୁଡ଼ିକର ଅସ୍ତିତ୍ୱକୁ । ସବୁ କିଛି ନିସ୍ତବ୍ଧ । ଏହି ଶାନ୍ତ ପରିବେଶ ସହିତ ସମତାଳରେ ସ୍ପନ୍ଦିତ ହୋଇ ଉଠିଲା ଆଗନ୍ତୁକର ହୃଦୟ । ଟେବୁଲ ଉପରେ ପଡ଼ିଥିବା ସେଇ ଦୂର୍ମୂଲ୍ୟ ଚୁମ୍ବିକାମଟିକ ତାକୁ ଜଣାଇ ଦେଲା ସେ ଯାହାକୁ ଖୋଜୁଛି ସେ ଘରେ ଅଛି, ସେ ଯେମିତି ଛାଡ଼ିଥିଲା ସବୁ ସେମିତି ରହିଛି ଠିକ୍‌ଠାକ୍ ହୋଇ ।

ଏହି ଜନ୍ମୋତ୍ସବର ଭୋଜରେ ସେ ଯୋଗ ଦେଇନଥିଲା । ଇତିମଧ୍ୟରେ ଯେଉଁ ଦୁଇଟି ଦିନମାନ ବିତିଯାଇଛି ସେହି ଦୁଇଟି ଦିନ କେବଳ ରଖି ଦେଇ ଯାଇଛି ଗୋଟିଏ ବିଷାଦମୟ ସ୍ମୃତି, ତା ଛଡ଼ା ଆଉ କିଛି ନାହିଁ ।

ହଠାତ୍ ଦ୍ୱାରଟା ଖୋଲିଗଲା । ଦୁଇଟି ଇପ୍‌ସିତ ପ୍ରାଣ ପରସ୍ପରର ସମ୍ମୁଖୀନ ହୋଇ ଠିଆ ହୋଇଗଲେ—ତରୁଣ ଆଉ ତରୁଣୀ ।

ଗୋଟାଏ ପଲକ ପାଇଁ ଶୂନ୍ୟରେ ଦୋଦୁଲ୍ୟମାନ ହୋଇ ରହିଗଲା ପ୍ରେମ । ଏହି ନିବିଡ଼ ନିରୋଳତା ଭିତରେ ସେହି ଦୁଇଜଣଙ୍କ ଘରେ । ଆଉ କେହି କୁଆଡ଼େ ନାହାଁନ୍ତି, ସମସ୍ତେ ବାହାରେ କର୍ମରତ ।

ଅର୍ଦ୍ଧମୁକୁଳିତ ଦ୍ୱାର ପାଖରେ ଠିଆ ହୋଇ ରହିଲା ସେଲ୍‌ମା । ତାର ହାତ ଭିତରେ ଇଲ୍‌ମାର ସାଲେନେନ୍‌ର ହାତ, ତାର ଅବଚେତନ ମନ ଭିତରେ ଆସନ୍ନ ଚୁମ୍ବନର ପୁଲକମୟ ପ୍ରତୀକ୍ଷା । ଧୀରେ ଧୀରେ ସାଲେନେନ୍ ସାଉଁଟି ଆଣିଲା ତାକୁ ତାର ଦୁଇ ବାହୁର ନିବିଡ଼ ଆଶ୍ଳେଷ ଭିତରକୁ । ଦୁଇଟି ଅଧରର ଅମୃତ ସ୍ପର୍ଶରେ ଚହଲିଗଲା କକ୍ଷର ମାରବତା । ସେଇ ମୁହୂର୍ତ୍ତଠୁ ପରସ୍ପରର ନିଜର ହୋଇଗଲେ ସେମାନେ । ଉନ୍ମେଷିତ ହୋଇ ଉଠିଲା ସେଲ୍‌ମାର ଜୀବନର ଆନନ୍ଦ ଶରତର ସୁମନ ପରି, ଶରତର ଶ୍ୟାମଳ ଶସ୍ୟର ସମ୍ଭାର ପରି ।

ଏଇ ମୁହୂର୍ତ୍ତଟିରେ ମୂର୍ତ୍ତ ହୋଇ ଉଠିଲା ତାର ଯୁଗଯୁଗର ସ୍ୱପ୍ନ ।

ଇଲ୍‌ମାଙ୍କର ପ୍ରାଣେ ପ୍ରାଣେ ମଧ୍ୟ ସଞ୍ଚରିତ ହୋଇଗଲା ଏହି ପରିପୂର୍ଣ୍ଣତାର ସ୍ପର୍ଶ । ଆହୁରି ଦ୍ରୁତ ବେଗରେ ସ୍ପନ୍ଦିତ ହୋଇ ଉଠିଲା

ତାର ହୃଦୟ୍‌······ଗୋଟାଏ ମୁହୂର୍ତ୍ତ ପାଇଁ ମନେ ହେଲା ଯେମିତି ତାର ଶ୍ୱାସରୋଧ ହୋଇ ଆସୁଛି ।

ସେଲ୍‌ମାର ହାତଟିକୁ ନିଜ ହାତରୁ ଖସାଇ ଦେଇ ସେ ଅନ୍ୟମନସ୍କ ଭାବେ ଆଗେଇ ଗଲା ଏକାକୀ ।

"ଏଇଠି ଟିକିଏ ବସିବ ନାହିଁ, ତମେ ?" ସେଲ୍‌ମାର କଣ୍ଠରେ କରୁଣ ଅନୁନୟ, "ବସିବ ନାହିଁ ତମେ ଟିକିଏ, ଗୋଟିଏ ମୁହୂର୍ତ୍ତ ପାଇଁ ?"

"ନାଁ" ଉତ୍ତର ଦେଲା ତରୁଣ, "ମୁଁ ବରଂ ଟିକିଏ ବିଶ୍ରାମ ନିଏ !"

"ତାହେଲେ ଅସ ମୋ ସାଙ୍ଗରେ ଅତିଥି କକ୍ଷକୁ", ହାତଧରି ଆଗେଇ ନେଲା ସେଲ୍‌ମା ତାକୁ । ତରୁଣର ମନେ ହେଲା ସେ ଯେମିତି ଏକ ନୂତନ ଜୀବନର ଅନ୍ତଃପୁରରେ ପ୍ରବେଶ କରୁଛି, ମନେ ହେଲା ଏଇ ମୁହୂର୍ତ୍ତଟି ଯେମିତି ଆଣି ଦେଇଛି ଏକ ଦୁର୍ଲଭ, ଅପ୍ରତ୍ୟାଶିତ ଆନନ୍ଦ ତା ପାଇଁ ।

ସେଲ୍‌ମାର ପ୍ରାଣରେ ପ୍ରେମର ବନ୍ୟା । ସମଗ୍ର ସତ୍ତା ତାର ଏକ ନୂତନ ଚେତନାରେ ବିହ୍ୱଳ । ଧୀରେ ଧୀରେ ପ୍ରସ୍ଫୁଟିତ ହୋଇ ଉଠୁଛି ତାର ପ୍ରାଣପୁଷ୍ପ । ସାର୍ଥକ ହୋଇ ଉଠୁଛି ବହୁ ଯୁଗର ଅଙ୍ଗୀକାର । ମଗ୍ର ଜୀବନରେ କେବଳ ଥରେ ମାତ୍ର ଆସେ ଏହି ପୂର୍ଣ୍ଣତା, ଏହି ସାର୍ଥକ ଙ୍ଗୀକାରର ମୁହୂର୍ତ୍ତ ।

ଏଇତ ସେଲମାର ଜୀବନର ଚରମ ମୁହୂର୍ତ୍ତ । ମନେ ହେଲା ସେ ଯେମିତି ସ୍ୱପ୍ନାଚ୍ଛନ ହୋଇ ତାର ନିତିଦିନିଆ କାମ କରି ଚାଲିଛି ।

ଇଲ୍‌ମାର ତା ଆଗରେ ଦୁଆର ମୁହଁରେ ଉଭା ହେବା ପୂର୍ବରୁ ତାକୁ ବଡ ନିଃସଙ୍ଗ, ବଡ଼ ନିଃସ୍ୱ ମନେ ହେଉଥିଲା । କିନ୍ତୁ ଏହି ନିଃସ୍ୱତା ଭିତରେ ଥିଲା ଏକପ୍ରକାର ଆନନ୍ଦ ଆଉ ଆଶ୍ୱାସ କାରଣ ସେ ପିତାଙ୍କର ଗୃହର ଆଶ୍ରୟ ଭିତରେ ଥିଲା । ଏଇନେ ସେ ଆଉ ନିଃସଙ୍ଗ ନୁହେଁ । ତା ସଙ୍ଗରେ ଆଜି ଆଉ ଜଣେ ଅଛି । ତେଣୁ ସେ ଆଜି ଆଉ ଅଶାନ୍ତ ନୁହେଁ ।

ଟେବୁଲ ଉପରେ ଖାଦ୍ୟପାତ୍ର ସଜାଡ଼ି ରଖୁ ରଖୁ ଗୋଟାଏ ନୂତନ ସ୍ପନ୍ଦନ ସେ ଅନୁଭବ କଲା । କଣ ହୋଇପାରେ ସେ ? ନୂତନ ଆଗନ୍ତୁକ

ପ୍ରତି ତାର ମମତା କଣ ସତେ କମିଗଲା ? ନାଁ, ତାତ ନୁହଁ । ବରଂ ତାର ବିପରୀତ । ସେଲ୍ମା ବୁଝି ପାରିଲା ନାହିଁ ତା ଉପରି ଦେଇ ଏ କି ପରିବର୍ତ୍ତନ ଘଟିଯାଉଛି । ଏଇତ ଏଇ କେତୋଟି ମୁହୂର୍ତ୍ତ ପୂର୍ବରୁ କେଡ଼େ ସଜୀବ ଥିଲା ତାର ସ୍ୱପ୍ନ । କିନ୍ତୁ ସେ ସ୍ୱପ୍ନ କାହିଁକି ହଜି ହଜି ଯାଉଛି ଏଇନେ—ହଜି ହଜି ଲୀନ ହୋଇ ଯାଉଛି ଆହୁରି ଏମିତି ଅସରନ୍ତି ସ୍ୱପ୍ନ ସହିତ ଯେଉଁ ଗୁଡ଼ାକ ଅବ୍ୟକ୍ତ ଅପୂର୍ଣ୍ଣ ହୋଇ ମିଳେଇ ଯାଉଛି ଅତୀତର ଅନ୍ଧକାର ଭିତରେ । ଇଲ୍ମାରି ସାଲୋନନ୍ ! ଏତେ ଭଲ ପାଏ ସେ ତାକୁ ଅଥଚ ମନେ ହେଉଛି ସେ ଯେମିତି ଅଚିହ୍ନା ଅଜଣା ହୋଇ ରହି ଯାଇଛି ସେମିତି ତା ପାଖରେ । ଇଲ୍ମାରି ଫେରି ଆସିଲା କକ୍ଷ ଭିତରକୁ । କଫି ଖାଉ ଖାଉ ଅନେକ କଥା ସେମାନେ ଗପିଗଲେ ଯାହାର ଅର୍ଥ ନାହିଁ, ଯାହାର ଶିଅ ନାହିଁ, ଯାହା କେବଳ ପ୍ରଣୟୀ ପ୍ରଣୟିନୀମାନେହିଁ ଗପନ୍ତି । ସେଲ୍ମାର ବାପା ଖେତରୁ ଫେରିବା ପର୍ଯ୍ୟନ୍ତ ସେମାନଙ୍କର ଗପ ଏମିତି ଚାଲିଲା । ପରେ ସନ୍ଧ୍ୟାରେ ତାର ବାପା ମଧ୍ୟ ବହୁ ସମୟ ଧରି ଗପିଲେ ଇଲ୍ମାରି ସାଙ୍ଗରେ । ଇଲ୍ମାରି ତାଙ୍କୁ କହିଗଲା ତାର ଭବିଷ୍ୟତର ଯୋଜନା କଣ, ତାର କେତେଦୂର ସାଫଲ୍ୟ ହୋଇଛି ଏଥିଭିତରେ ଆଉ ସେ ଭାବୁଥିଲା ତାର କାହାଣୀକୁ ସେମାନେ ଶୁଣୁଛନ୍ତି ସହାନୁଭୂତିର ସହିତ, ତାର ଉତ୍ସାହରେ ମଧ୍ୟ ସେମାନେ ଉତ୍ସାହୀ ।

ନିଜର ଦୈନନ୍ଦିନ ଘର କାମ କରି ଯାଉ ଯାଉ ସେଲ୍ମା ମଧ୍ୟ ଶୁଣିଲା ସେଇ କାହାଣୀ । ଆନନ୍ଦରେ ଭରି ଉଠିଲା ତାର ମନ—ଏଇ ଯେଉଁ ମଣିଷଟି ତାର ଏତେ ଅନ୍ତରଙ୍ଗ ହୋଇ ପଡ଼ିଛି ଏଇ ମାତ୍ର କେତୋଟି ଘଣ୍ଟା ପୂର୍ବରୁ ସେ ପ୍ରଣୟୀ ହିସାବରେ ଯେତିକି ପାରଙ୍ଗମ ଫସାରୀ ହିସାବରେ ବି ସେତିକି ସୁଦକ୍ଷ । ବଡ଼ ଆନନ୍ଦଦାୟକ ତାର ଏ ଉପଲବ୍ଧି ।

ରାତ୍ରୀଭୋଜନ ଶେଷ ହେଲା । ତରୁଣୀଗଣ ଯେ ଯାହାର କକ୍ଷକୁ ଫେରିଗଲେ । ଅତିଥି ମଧ୍ୟ ଗୃହକର୍ତ୍ତାଙ୍କଠାରୁ ବିଦାୟ ନେଇ ଚାଲିଗଲେ । ଦିନ ପରେ ଦିନ ଚାଲିଗଲା । କିନ୍ତୁ ସେ ଦିନର ସେଇ ଗୋଧୂଳିମୟ ସ୍ୱର୍ଣ୍ଣାଭ ରକ୍ତିମା ସଞ୍ଜୀବିତ ହୋଇ ରହିଲା ବହୁ ସନ୍ଧ୍ୟାର ଅନ୍ଧକାର ଭିତରେ ।

ଏମିତି ଆଉ ଗୋଟିଏ ସନ୍ଧ୍ୟା । ନିଜ କକ୍ଷର କବାଟଟିକୁ ଈଷତ୍ ଉନ୍ମୁକ୍ତ ରଖିଦେଇ ସେଲମା ଚାହିଁ ରହିଛି ସନ୍ଧ୍ୟାର ଅନ୍ଧକାର

ଭିତରକୁ । ସେଣ୍ଟିବାଟ ଦେଇ ଯାଉ ଯାଉ ଇଲ୍‌ମାର ଦେଖିଲା ସେଲ୍‌ମା କକ୍ଷର ଦୁଆରଟା ଖୋଲା ରହିଛି ।· ଦ୍ୱାର ପାର ହୋଇ ଖୁବ୍ ସନ୍ତର୍ପଣରେ ସେ ଆଗେଇ ଗଲା କକ୍ଷ ଭିତରକୁ ।

"ସେ ଆସୁଛନ୍ତି", ମନକୁ ମନ ଗୁଣୁ ଗୁଣୁ ହୋଇ ଚେଇଁ ଉଠିଲା ସେଲ୍‌ମା । "ଏଇତ ଆସି ଗଲେଣି, ଏଇନେ ମତେ ହାତରେ ତୋଳି ନେବେ ସେ । କଣ କରିବିଟି ମୁଁ ?" ଏ ପ୍ରଶ୍ନର ଉତ୍ତର ସେ ନିଜେ ଜାଣେ । ସେ ଜାଣେ ସେ ତାଙ୍କୁ ବାଧା ଦେବ ନାହିଁ । ସେ ଜାଣେ ଏଇ ତରୁଣହିଁ ତାର ଏକମାତ୍ର ମନର ମଣିଷ । ତାର ସମଗ୍ର ସତ୍ତା ଭିତର ଦେଇ ଧୀରେ ଧୀରେ ଅଙ୍କୁରିତ ହୋଇ ଉଠିଲା ଗୋଟାଏ ନୂତନ ଚେତନା, ଭଂଗୁର କାଚ ପରି ଝୁର୍ ଝୁର୍ ଗୋଟାଏ ଚେତନା—ଯେଉଁ ଚେତନାକୁ ଦଳିଦେବା, ଧ୍ୱଂସ କରିଦେବା ଠିକ୍ ହେବନାହିଁ ତାର ସମ୍ପୂର୍ଣ୍ଣ ରୂପ ପରିସ୍ଫୁଟ ହୋଇ ଉଠିବା ପୂର୍ବରୁ, ଯେଉଁ ଚେତନା ପୁଣି ଥରେ କେବେ ଆଉ ଅଙ୍କୁରିତ ହୋଇ ଉଠିବ ନାହିଁ ତାର ଜୀବନରେ ।

ଇଲ୍‌ମାର ସାଲୋମନ୍ ଭାବିଥିଲା ସେ ନାରୀଜାତିକୁ ଭଲରୂପେ ଚିହ୍ନେ । କିନ୍ତୁ ଏଇ ସନ୍ଧ୍ୟାରେ ସେ ବୁଝିଲା ତାର ଆହୁରି ବହୁତ କିଛି ବାକି ଅଛି ଶିଖିବା ପାଇଁ ନାରୀମାନଙ୍କ ସମ୍ପର୍କରେ । ବହୁଦିନ ଧରି ସେ କଳ୍ପନା କରି ଆସିଥିଲା ସେଲ୍‌ମାକୁ ତାର ଭବିଷ୍ୟତର ସଙ୍ଗୀନୀ ରୂପରେ । ଏଇ ରମଣୀୟ ସନ୍ଧ୍ୟାରେ ସିଡ଼ିର ସୋପାନ ପରେ ସୋପାନ ପାର ହୋଇ ଯାଉ ଯାଉ ସେ ବୁଝି ପାରିଲା ତାର ଜୀବନର ପରମ ମୁହୂର୍ତ୍ତ ଉପସ୍ଥିତ । ମନେ ହେଲା ତାକୁ ଘେରି ରହିଥିବା ସମଗ୍ର ସମୀରଣ ଯେମିତି ଉଜ୍ଜୀବିତ ହୋଇ ଉଠିଛି ଏଇ ଚେତନାରେ । ଏଇ ଚେତନାରେ ଉଜ୍ଜ୍ୱଳ ହୋଇ ଉଠିଲା, ଉଲ୍ଲସିତ ହୋଇ ଉଠିଲା ତାର ସମଗ୍ର ଅସ୍ତିତ୍ୱ, ପୁଲକିତ ହୋଇ ଉଠିଲା ତାର ପ୍ରାଣ ।

ପ୍ରାଣରେ ଏଇ ଅପୂର୍ବ ପୁଲକ ନେଇ ସେ ଉଠେଇ ନେଲା ତାର ପ୍ରେୟସୀକୁ ନିଜର ଦୁଇ ବାହୁର ନିବିଡ଼ ଆବେଷ୍ଟନୀ ଭିତରକୁ । ଦୁଇଟି ଅଧର ଏକାକାର ହୋଇଗଲା ଆଉ ଦୁଇଟି ଅଧରରେ । ମୁହଁରେ ସ୍ମିତର ସ୍ୱରଭି ଛୁଟେଇ ଦେଇ ସେଲ୍‌ମା ସମର୍ପି ଦେଲା ନିଜକୁ, ହଜେଇ ଦେଲା ନିଜକୁ ସେଇ ଆଶ୍ଳେଷ ଭିତରେ । ସ୍ମିତର ପ୍ରତିନାଦ ଦେଇ କହିଲା ତରୁଣ, "ଏଇ ସୁନ୍ଦର ସୁମଧୁର ସନ୍ଧ୍ୟାର କି ଅପୂର୍ବ ଅବଦାନ ଏବେ ଆମ ପାଇଁ ।"

ତରୁଣର ବାହୁ ଉପରେ ଭର ଦେଇ କେତେ କଥା କହୁଥିଲା ସେଲ୍‌ମା, ଧୀରେ ଧୀରେ, ଅର୍ଥହୀନ, ଅସଂଲଗ୍ନ ଅସ୍ଫୁଟ ଭାଷାରେ । ଏହିତ ତାର ପରିପୂର୍ଣ୍ଣ ପ୍ରାଣର ପ୍ରଗଲ୍‌ଭତା ! ତାର ବହୁ ବିଳମ୍ବିତ ଜୀବନର ବିଳାସ !

ଏଇ ଗୋଧୂଳି, ଏଇ ଗୋଧୂଳିର ପରମ କୋମଳତା ଏଇ ପ୍ରାଚୀନ ପ୍ରାସାଦ ବହୁବାର ଦେଖି ଆସିଛି, ଯୁଗ ଯୁଗ ଧରି, ପୁରୁଷ ପୁରୁଷ ଧରି । ପୁରୁଷ ପରେ ପୁରୁଷ ବହୁ ମଣିଷ ଯେଉଁମାନେ ଏଇ ଘରେ ଜନ୍ମ ହୋଇଛନ୍ତି ସେମାନେ ବଞ୍ଚିଛନ୍ତି, ବଞ୍ଚି ବଞ୍ଚି ମରିଯାଇଛନ୍ତି ଆଉ ଏଇ ଘରର ଆଦିମ ପ୍ରାଚୀରର ଗାତେ ଗାତେ ଛାଡ଼ି ଯା ଛନ୍ତି ସେମାନଙ୍କର ଅସୁମାର ସ୍ଵପ୍ନର ଅଦୃଶ୍ୟ ସ୍ଵାକ୍ଷର—ସ୍ଵପ୍ନ ସେମାନଙ୍କର ବାତାୟନର ଧାରେ ଧାରେ ଛାଇ ହୋଇ ମିଳେଇ ଯାଇଛି, ଉଦ୍ୟାନର ମର୍ମରିତ ପତ୍ରର ଆବର୍ତ୍ତ ଭିତରେ ଘୂର୍ଣ୍ଣାୟମାନ ହୋଇ ଉଠିଛି ଆଉ ତା ପରେ ସରଣୀର ଛାଟରେ ଛାଟରେ ଭାସି ଯାଇଛି ଦୂର ଦିଗ୍‌ବଳୟର ଅସୀମ ଅନ୍ଧକାର ଭିତରକୁ !

ଇଲ୍‌ମାର ସ୍କୁଲଗଲାଣି । ସେଲ୍‌ମା ବସି ରହିଛି । ବସି ବସି ସ୍ଵପ୍ନ ଦେଖୁଛି । ସ୍ଵପ୍ନରେ ସ୍ଵପ୍ନରେ ଏଇ ବିଗତ ମୁହୂର୍ତ୍ତ ଗୁଡ଼ିକର ଚେତନାକୁ ପୁଣି ମନରେ ଛୁଇଁ ଛୁଇଁ ଯାଉଛି । ହଠାତ୍ ତାର ମନେ ହେଲା ଏଇ ସଂକ୍ଷିପ୍ତ ଅବକାଶ ଭିତରେ ସତେ ଯେମିତି ବୟସ ତାର ଢେର ବଢ଼ି ଯାଇଛି । ବୟସ ତାର ବଢ଼ି ବଢ଼ି ଯାଉଛି, ଆଖିପତା ଦିଟା ତାର ବୁଜି ବୁଜି ହୋଇ ଆସୁଛି । ସେଲ୍‌ମା ବୁଝୁଛି ବାସ୍ତବିକ ସେ କେଡ଼େ ଉଦାସୀନ ହୋଇ ପଡ଼ୁଛି ଏଇ ହଜି ହଜି ଯାଉଥିବା ମୁହୂର୍ତ୍ତଗୁଡ଼ାକ ପ୍ରତି । ଘୁମନ୍ତ ଆଖିରେ ତାର ଘୋଟି ଘୋଟି ଆସୁଛି ଅସୀମ ବିସ୍ମୃତି ।



# ହଜିଗଲା ତାରକାର ସ୍ରୋତ

ଏ. କାସ୍ଲର୍ ଶେଫ୍

[ ଏଞ୍ଜେଲ କାସ୍ଲର୍ ଶେଫ୍ ବୁଲ୍‌ଗେରିଆର ଅନ୍ୟତମ ‘ବିଶିଷ୍ଟ ଲେଖକ । କ୍ଷୁଦ୍ର ଗଳ୍ପ, ‘ବିଶେଷକରି ଶିଶୁ କାହାଣୀ ସୃଷ୍ଟି କରିବାରେ ତାଙ୍କର ଖ୍ୟାତି ତାଙ୍କ ନିଜ ଦେଶର ସୀମା ଅତିକ୍ରମ କରିଯାଇଛି । ସେ ୧୯୦୨ ଖ୍ରୀଷ୍ଟାବ୍ଦରେ ଷ୍ଟାରାଜ୍‌ଗୋରାଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରଥମ କ୍ଷୁଦ୍ରଗଳ୍ପ ସଂଗ୍ରହ ୧୯୨୪ରେ ପ୍ରକାଶିତ ହୋଇଥିଲା—ସେଥିରେ ରୂପ ପାଇଥିଲା ବିଦ୍ରୋହୀ ଜନତାର ବୀରତ୍ୱ ଆଉ ବେଦନାର କାହାଣୀ । ୧୯୪୪ରେ ବୁଲ୍‌ଗେରିଆର ରାଜନୈତିକ ଓ ସାମାଜିକ ମୁକ୍ତିପରେ ସେ ତାଙ୍କର ସମସ୍ତ ଶକ୍ତି ନିୟୋଜିତ କରିଛନ୍ତି ନବଜୀବନର ନିର୍ମାଣରେ । ଅନୁଦିତ ଗଳ୍ପଟି ହେଉଛି ତାଙ୍କର “ଦି ଲିଟ୍‌ଲ କଏନ୍” ଗଳ୍ପର ଓଡ଼ିଆ ରୂପାନ୍ତର ]

“କହିଲ ଦେଖି ଭାଗ୍ୟରେ ମୋର କଣ ଅଛି ?”

ଦୁଇଟି କଳା କଳା ଜ୍ୱଳନ୍ତ ଆଖି ପ୍ରତୀକ୍ଷାକରି ରହିଛି ଯେପରି ଅନା କେଉଁ ଗୋପନ ରହସ୍ୟ ଉଦ୍‌ଘାଟନ କରିଦେବେ ଶୁଣିବ ବୋଲି । ଯେପରି ଅନା ସବୁକିଛି ଦେଖିପାରନ୍ତି, କାଳର କୁଟିଳ ଗତି ଭିତର ଦେଇ ଦେଖି ପାରନ୍ତି, ଦେଖି ପାରନ୍ତି ମେଘ ଓ ପାହାଡ଼ ଭିତର ଦେଇ, କେଉଁ ଅଜଣା ଅଶୁଣା ସାଗର ମହାସାଗର ଭିତର ଦେଇ । ସେ ଠିକ୍ ତମକୁ କହିଦେଇ ପାରିବେ ତମ ଜୀବନର ଗତି କେଉଁ ପଥଦେଇ ଆଗେଇ ଯାଇଛି ଆଉ ତମେ କେମିତି ଆଗେଇ ଯିବ ସେହି ପଥରେ—ଉଦ୍ଦାମ ଘୋଡ଼ା ଉପରେ ଚଢ଼ି ନାଁ ଗ୍ଲେଛା ଗଧ ଉପରେ ବସି ।

ଦୁଇଟି କୋମଳ ଆଖିର ଅନୁନୟ ତାଙ୍କ ଆଗରେ ।

ଧୀରେ ଧୀରେ ଶିଖାୟିତ ହୋଇ ଉଠିଲା ଅଗ୍ନିର ଆହ୍ୱାନ, ବିଚ୍ଛୁରିତ ହୋଇ ପଡ଼ିଲା ଅଗଣିତ ପୀତାଭ ସ୍ଫୁଲିଙ୍ଗ । ଉଚ୍ଛ୍ୱସିତ ପାହାଡ଼ୀ ଝରଣାର ବୁକୁ ଉପରକୁ ନଇଁ ଆସିଥିବା ଶାଳ୍ମଳୀ ତରୁର ଶାଖାଗୁଡ଼ାକ ଗୋଟାଏ ଅଜଣା ଆତଙ୍କରେ ଶିହରି ଉଠିଲା ।

ବେଲକନ୍ ଉପତ୍ୟକାରେ ସନ୍ଧ୍ୟା ନଇଁ ଆସିଲା । ସେଇ ଦୂରରେ ଯେଉଁଠି ଝଡ଼ିପଡ଼ୁଛି ସୂର୍ଯ୍ୟ ଠିକ୍ ତାରି ଉପରେ ଫୁଟିଉଠିଲା ଗୋଟିଏ ପୀତାଭ ତାରକା—ସତେ ଯେମିତି ଯୀଶୁ-ମାତାର କଣ୍ଠହାରରୁ ଗୋଟିଏ କ୍ଷୁଦ୍ର ମୁଦ୍ରା ଖସିପଡ଼ୁଛି । ଦୋଳାୟିତ ଗହମ ଶିସାର ଲଲାଟ ଉପରେ ଚେଷ୍ଟ ଚେଷ୍ଟ ଝିଲ୍ଲିପୁଂଜ ହଠାତ୍ ମୁଖର ହୋଇ ଉଠିଲେ ।

ସାମନାରେ ଯେଉଁ ସୁପ୍ରଶସ୍ତ ରାଜପଥଟି ଡୋବ୍ରୁଜା ଆଡ଼କୁ ଆଗେଇ ଯାଇଛି ତାରି ଧାରେ ଧାରେ ଦେଖାଗଲା ଗୋଟିଏ ଶ୍ୱେତ ଶୁଭ୍ର ପଗଡ଼ିକନା ଟଙ୍ଗା ହୋଇଛି । ତାରି ପାଖରେ ଉଜ୍ଜ୍ୱଳ ରଙ୍ଗର ଗୋଟିଏ ଶିଶୁର ଦୋଳନା । ସେପଟୁ ଭାସିଆସିଲା ଗୋଟିଏ ଶିଶୁର କଣ୍ଠସ୍ୱର, ତାପରେ ଗୋଟିଏ କଳାମୁଣ୍ଡ ଉପରକୁ ଉଠି ଆସିଲା । ତାରି ଭିତରୁ ଦେଖାଗଲା ଜକ ଜକ ଦୁଇଟି ଆଖି । ପାଲଗଦା ଉପରେ ଥୁଆ ହୋଇଥିବା କାଠପଟା ଗୁଡ଼ାକ ଧଡ଼ଧଡ଼ ହେଲା ଆଉ ଗୋଟାଏ ମୁହୂର୍ତ୍ତ ପାଇଁ ଦୁଇଟା ବଡ଼ ବଡ଼ ପୋଡ଼ର ପଛପଟ ଦୃଷ୍ଟିପଥକୁ ଆସି ପୁଣି ଉଭେଇ ଗଲା । ତାପରେ, ଅଳ୍ପ କେତୋଟି ମୁହୂର୍ତ୍ତ ପରେ ଏ ସମସ୍ତ ଦୃଶ୍ୟ ଆଉ ସେଇ ସୁପ୍ରଶସ୍ତ ଶ୍ୱେତ ରାଜପଥଟି ସ୍ୱର୍ଣ୍ଣାଭ ଶସ୍ୟ କ୍ଷେତର ଉଷ୍ମ ହିଲ୍ଲୋଳ ଭିତରେ କୁଆଡ଼େ ତଳେଇ ଗଲା । ଦୂର ବାଲ୍‌କାନ୍ ପର୍ବତମାଳାର କୃଷ୍ଣାଭ ଶୃଙ୍ଗଗୁଡ଼ାକ ଆସ୍ତେ ଆସ୍ତେ ଅନ୍ଧକାର ଭିତରେ ଟଳିପଡ଼ିଲା । ଆଖି ଆଗର ସେଇ ଧୂସର ପାହାଡ଼ ଆଉ ସେଇ ନିବିଡ଼ଅରଣ୍ୟାନୀ ସବୁ କୁଆଡ଼େ କେଉଁଠି ଛପିଗଲା । ଏ ବିଶାଳ ପ୍ରାନ୍ତର ଉପରେ ବିକ୍ଷିପ୍ତ ହୋଇ ରହିଥିବା ଗଛ-ଗୁଡ଼ାକ ପକ୍ୱ ଗହମ କ୍ଷେତର ସୁକୋମଳ ଶଯ୍ୟା ଉପରେ ଢଳେଇ ପଡ଼ିଲେ ଧୀରେ ଧୀରେ । ଆଉ କିଛି କୁଆଡ଼େ ଦେଖାଗଲା ନାହିଁ । ପ୍ରାନ୍ତର ଉପତ୍ୟକାର ବୁକୁ ଉପରେ ଖାଲି ଝୁଲି ରହିଲା ନୀରବ ନିଷ୍ପନ୍ଦ ନିରତାଭ କୁହେଳିର ଆସ୍ତରଣ । ଏହି ଉପତ୍ୟକାର କୋଳ ଭିତରେ ଝରଣା ଉପରେ ନଇଁପଡ଼ି, ଠିଆ ହୋଇଛି କେବଳ ସେଇ ନିଃସଙ୍ଗ ଶାଳ୍ମଳୀ ତରୁଟି । ତାରି ପାଖରେ ଗୋଟିଏ ସଙ୍କୀର୍ଣ୍ଣ ସବୁଜ ଘାସର ପ୍ରାନ୍ତର । ଉଜ୍ଜ୍ୱଳ

ଅଗ୍ନି ଶିଖାରେ ଆଲୋକିତ ହୋଇ ଉଠିଛି । ଫସଲ କାଟି କାଟି ଘର୍ମ ବଦନର କ୍ଳାନ୍ତ ପରେ ସେଇ ନିଆଁ ଚୁଲପଟେ ଦଳେ ଝିଅ ଶୋଇ ପଡ଼ିଛନ୍ତି । ଗଭୀର ନିଦ୍ରାରେ ଆଚ୍ଛନ୍ନ ସମସ୍ତେ । କେବଳ ଦକ୍ଷଣଙ୍କ ଆଖିରେ ନିଦନାହିଁ । ତମସାବୃତ ଆକାଶର ବୁକୁ ଉପରେ ଭାସମାନ ସଂଧ୍ୟା ତାରାକୁ ଅନେଇ ରହିଛନ୍ତି ସେମାନେ । ଆଜି ଗହମ କ୍ଷେତର ଶସ୍ୟର ହିଲ୍ଲୋଳ ଭିତର ଦେଇ ଯେତେବେଳେ ତାଙ୍କ ଆଡ଼କୁ ଭାସି ଆସୁଛି ମୃଦୁ ମର୍ମରଣ ସେତେ-ବେଳେ ଏକ ସୁମଧୁର ବେଦନାରେ ତନ୍ଦ୍ରାଚ୍ଛନ୍ନ ହୋଇ ପଡ଼ୁଛି ସେମାନଙ୍କର ନୟନ । ଆକାଶର ଅଚନ୍ଦ୍ର ତାରାକୁ ଚୁହିଁ ଚୁହିଁ ସେମାନେ କହୁଛନ୍ତି, ସଂଧ୍ୟା ତାରା ତୁ ଧୀରେ ଧୀରେ ନଇଁ ଆସିବୁ ଗ୍ରାମର ଚୋଗୃରଣ ପ୍ରାନ୍ତର ଉପରକୁ ଯେତେବେଳେ ଗ୍ରାମ ଉପର ଦେଇ, ସେଇ ଦୂର ପାହାଡର ବୁକୁ ଉପର ଦେଇ ଭାସିଯିବ ଗୋପନ ଅଭିସାରର ମିଳନ ମୁହୂର୍ତ୍ତ । ସେଇ ଦୂର ପାହାଡ଼, ତାର ଉପରେ ପଲ୍ଲୀ କର କଳା କଳା ଆଖିର ଅଶ୍ୱପାଳକ ତରୁଣମାନେ ଶୁଅନ୍ତି । ଝିଅମାନେ ସଂଧ୍ୟା ତାରାକୁ କହିବାକୁ ଚାହାନ୍ତି, "ଏ ସଂଧ୍ୟା ତାରା, ତୁ ସେଇ ଘୁମନ୍ତ ତରୁଣମାନଙ୍କ ପାଖକୁ ଛପି ଛପି ଯାଇ ତାଙ୍କର କାନେ କାନେ ଜଣାଇଦେବୁ ଗହମ କଟାଳୀ ତରୁଣୀଦଳର ଅଭିବାଦନ ।"

ଏଇ ତରୁଣୀ ଦଳର ସର୍ଦ୍ଦାର ହେଉଛନ୍ତି ବୃଦ୍ଧ ଘେନୋ ଅଜା । ସେ ମଧ୍ୟ ସେଇ ନିଆଁ ପାଖରେ ଟିକିଏ ଆଉଜି ବସି ଯାଇଛନ୍ତି । ରଙ୍ଗୀନ କୋଟ୍‌ଟା ତାଙ୍କର ପଡ଼ିଛି ତାଙ୍କ କାନ୍ଧ ଉପରେ । ଘେନୋ ଅଜା ପାଇପ୍ ଟାଣିବାରେ ଲଗିଛନ୍ତି । ତାଙ୍କର ଆଗରେ ତାଙ୍କ କୋଳକୁ ଆଉଜି ବସିଛି ସେଇ ଫସଲକଟା ତରୁଣୀ ଦଳର ସବୁଠୁ ଛୋଟଝିଅ—ଭେଲ୍‌ଲା । ଭେଲ୍‌ଲା ଆଗରୁ କେବେ କେଉଁ ଅଜଣା ସ୍ଥାନକୁ ଯାଇ ନଥିଲା । ତେଣୁ ଭେଲ୍‌ଲା, ଏଇ ଉଦ୍ଦାମ ଦୁର୍ବିନୀତ ଭେଲ୍‌ଲା ନୂଆ ନୂଆ ଯାଗା ନୂଆ ନୂଆ ଜିନିଷ ଯେତେ ଦେଖିଲେ ବି ତାର ମନ ଭରେନା, ଯେତେଦୂର ଗଲେ ବି ତାର କ୍ଳାନ୍ତି ଆସେନା, ରାତି ଯେତେ ଗଭୀର ହେଲେ ବି ଆଖିରେ ତାର ନିଦ ଆସେନା । ଅନ୍ୟମାନଙ୍କୁ ପଛରେ ପକାଇ ଦେଇ ଆଗରେ ଆଗରେ ସେ ଦୌଡ଼ିଯାଏ ଖାଲି ପାଦରେ, ବନ୍ୟ ଅଶ୍ୱର କେଶର ପରି ହାଓ୍ୱାରେ ଉଡ଼ୁଥାଏ ତାର କେଶଗୁଚ୍ଛ । ପାହାଡ଼ ଉପରେ ପଥରରୁ ପଥରକୁ ଡେଇଁ ଡେଇଁ ସେ ଉଠିଯାଏ ଉପରକୁ, ଆହୁରି ଉପରକୁ । ଏଇ ରାଜପଥର

ଧୀରେ ଧୀରେ କେଉଁ ଅନାଦି କାଳରୁ ଯେଉଁ ସବୁ ପାହାଡ଼ ଠିଆ ହୋଇ ଆସିଛି ତାରି ଉପର ଦେଇ ସେ ବହୁବାର ଗୁହିଛି କେଉଁ ଏକ ଗିରିଶୃଙ୍ଗ ଉପରେ ଠିଆ ହୋଇ ସେ ଦେଖିବ ବସନ୍ତର ସ୍ୱର୍ଣ୍ଣାଭ ସ୍ନିଗ୍ଧହାସ୍ୟରେ ଉଜ୍ଜ୍ୱଳ ହୋଇ ଉଠିଥିବା ଆଖି ଆଗର ସୁଦୂର ପ୍ରସାରି ସୀମାହୀନ ଶସ୍ୟର ପ୍ରାନ୍ତରକୁ । ଏମିତି ବସନ୍ତର ଏକ ସୁନ୍ଦର ସକାଳରେ ହଠାତ୍ ତାର ଦୃଷ୍ଟି ପଥରେ ଫୁଟି ଉଠିଛି ଗୋଟିଏ ଶ୍ୱେତଶୁଭ୍ର ବଣୁଆ ବଗପକ୍ଷୀ । ବଗଟି ଧୀରେ ଧୀରେ ତାର ସେଇ ଲମ୍ବା ଲମ୍ବା ଗୋଡ଼ରେ ପାଦ ବଢ଼େଇ ବଢ଼େଇ ଗୁଲିଯାଉଛି ପଥର ପରେ ପଥର ଡେଇଁ ନଦୀକୂଳକୁ । ଆଉ ସେ ଯେତେ-ବେଳେ ତାର ସେଇ ଲମ୍ବା ବେକଟାକୁ ବଢେଇ ଦେଉଛି ପାଣି ଭିତରକୁ ସେତେବେଳେ ହେଲେ୍ନର ପ୍ରାଣ ନାଚି ଉଠିଛି ଆନନ୍ଦରେ । ଏମିତି ଦୃଶ୍ୟ ସେ ଦେଖି ନଥିଲା କେବେ ଜୀବନରେ । ଏମିତି ସବୁ ବଗପକ୍ଷୀ ତା ଗାଁକୁ ଆସନ୍ତି ନାହିଁ କେବେ ।

ଏଇ ସେ ହେଲେ୍ନ । ଆଜି ଏଇ ସଂଧ୍ୟାରେ ତାରି ପାଖରେ ବସି ବସି ଘେନୋ ଅଜା ତାରି ଭବିଷ୍ୟତ କହୁଛନ୍ତି । ହେଲେ୍ନ ବ୍ୟାକୁଳ ଭାବେ ପ୍ରତୀକ୍ଷା କରି ରହିଛି । ହାତଟାକୁ ବଢ଼େଇ ଦେଇ ପୂର୍ବବତ୍ ପଶୁପରି ସେ ପ୍ରତୀକ୍ଷା କରି ରହିଛି ।

ଘେନୋ ଅଜା ଯେତେବେଳେ ତାଙ୍କର ପାଇପ୍‌ଟାକୁ ଦାନ୍ତରେ ଚିପି ଧରି ଡାହାଣ ଆଖିର ଭ୍ରୂଲତାଟାକୁ ଟିକିଏ ଉପରକୁ ଉଠେଇ ଦେଇ ଆଖି ଦିଟାକୁ କୁଞ୍ଚିତ କରିଦେଲେ, ଆଉ ହେଲେ୍ନର ପ୍ରସାରିତ ଗହମ ରଙ୍ଗର ବାହୁଟାକୁ ଛୁଇଁଦେଇ ଅତି ଭାବମଗ୍ନ ହୋଇ ତାର ଭାଗ୍ୟ ପଢ଼ିବାକୁ ଲାଗିଲେ ସେତେବେଳେ ହେଲେ୍ନର ନିଃଶ୍ୱାସ ପ୍ରାୟ ବନ୍ଦ ହୋଇ ଆସିଲା ।

"କହ, ଭାଗ୍ୟରେ ମୋର କଣ ଲେଖା ହୋଇଛି ?"

"ରହ ଟିକିଏ ।"

"ଓଃ କି କଦର୍ଯ୍ୟ ମଣିଷଟାଏମ ତମେ ! ମତେ ଆଉ ଏମିତି ଯନ୍ତ୍ରଣା ଦିଅନା, ଅଜା !"

"ଏମିତି ବ୍ୟସ୍ତ ହେଲେ କେମିତି ହେବ ? ରହ ମୁଁ ଟିକିଏ ଭଲ କରି ଦେଖେ । ଏ କଣ ଖାଲି ଅକ୍ଷର ହୋଇଛି କି ପଢ଼ିଯିବା କଥା ! ଏ ଭାଗ୍ୟର ଲିଖନ ! ଥଇଧର । ପାଟି ଫିଟେଇଲେ ପଦେ ବି ତତେ

କହିବ ନାହିଁ । ହୁଁ, ଦେଖ, ଆଖିଟା ଦେଖ । ବାସ, ଠିକ୍ ଅଛି, ବେଶ୍ କଳା ହୋଇଛି ! ଗାଢ କଳା, ଆଉ ନିଆଁ ପୂରି ରହିଛି ସେଥିରେ ।" ମନକୁ ମନ ଫୁସୁରୁ ଫୁସୁରୁ ହେଲେ ବୃଦ୍ଧ । ତାପରେ ନୀରବ ହୋଇଗଲେ । ପୁଣି ଭାବମଗ୍ନ ହୋଇ ପଡ଼ିଲେ । କିଛି ସମୟ ପରେ ପୁଣି କହିଲେ, "ଏଇଠୁ ଖସିଯିବାର ଯୁ'ନାହିଁ । ଅବଶେଷରେ ସବୁ ସେଇଠି ହିଁ ଶେଷହେବ, ସେଇ ଶ୍ରେଷ୍ଠ ମୁଦ୍ରାଟିରେ ।"

"କେଉଁ ଶ୍ରେଷ୍ଠ ମୁଦ୍ରା, ଅଜା ?"

"ଏଇ ଧଳା ରୂପାର ମୁଦ୍ରାଟିଏ ।"

"କେଉଁଠି ଅଛି ସେଇଟା ?"

"ଏଇ, ତୋର ବେକରେତ ଝୁଲୁଛି । ସେଇଥିରେ ତ ଅଛି ତୋର ଭାଗ୍ୟ । ତୁ ଗୋଟିଏ ବଡ ଶୁଭ ମୁହୂର୍ତ୍ତରେ ଜନ୍ମ ହୋଇଛୁ, ଆଉ ତୁ ଯେ ସେଇ ଶ୍ରେଷ୍ଠ ମୁଦ୍ରାଟି ପାଇଛୁ ସେଇତ ତୋର ଭାଗ୍ୟ ଖୋଲିଦେବ । କିଏ ତୋ ବେକରେ ସେଇଟି ପିନ୍ଧେଇ ଦେଇଛି ଜାଣୁ, ତୋ ମା ?"

"ତମେ କଣ ତାଙ୍କୁ ମନେ ରଖିଛ ଅଜା ?"

"ମନେ ରଖିଛି ? ହୁଁ, ମନେ ନରଖିବ କେମିତି ! କାହିଁକି, ସିଏ ଆଉ ମୁଁ ତ⋯ "

"କଣ ହେଲା ?"

"ନାଇଁ, କିଛି ନାହିଁ । ତୋ ମା' ଦିନେ ସେଇ ଶ୍ରେଷ୍ଠ ମୁଦ୍ରାଟି ପିନ୍ଧିଥିଲା । ବହୁଦିନ ତଳେ ମୋ ଜେଜେବାପା ଜମି ଚଷୁ ଚଷୁ ସେଇଟି ପାଇଥିଲେ । ମାଟି ଭିତରେ ଝକ୍ ଝକ୍ କରି ଉଠିଥିଲା ସେହି ଶ୍ରେଷ୍ଠ ରୂପାର ଖଣ୍ଡଟା । ସେଇଟା ନେଇ ସେ ଗଲେ ପାଦ୍ରୀ ପାଖକୁ । ସେଇ ପେଟ୍ରୋ ପାଦ୍ରୀ ମ—ଚିହ୍ନିନୁ ତୁ ତାଙ୍କୁ ? ବହୁଦିନ ତଳର କଥା ଯେ, ତୁର୍କି ଅମଳର କଥା । ପାଦ୍ରୀ ଯେମିତି ଦେଖିଲା ସେଇଟା କହିଲା, ଭାରି ଭଲ ଜିନିଷଟେ ପାଇଛୁ । ବୁଢ଼ା, ଛାଡ଼ିବୁ ନାହିଁ କେବେ, ପାଖରେ ରଖିଥିବୁ । ତୋ ଭାଗ୍ୟ ଖୋଲିଯିବ । ସେଇ ଦିନଠୁ ମୋ ଆଈ ତାକୁ ବେକରେ ପିନ୍ଧିଥିଲା । ସେ ମରିଯିବା ପୂର୍ବରୁ ମାମାକୁ ତାକୁ ଦେଇଗଲା । କିନ୍ତୁ ଆମର କେହି ଭଉଣୀ ନଥିବାରୁ ମାମା ତାକୁ ଦେଇଦେଲା ଆମର ଶ୍ରେଷ୍ଠଭାଇ କୋଲିଓକୁ—ତୋ ବାପାକୁ ।"

ଗାଢ଼ରୁ ଗାଢ଼ତର ହୋଇ ଆସିଲା ରାତି । ସୁପ୍ତା ତରୁଣୀ ଦଳର ମଥା ଉପରେ ଝୁଲି ପଡ଼ିଥିବା ଶ୍ରେଣୀ ଶ୍ରେଣୀ ଗହମକେଣ୍ଡା ଉପରେ ଧୀରେ ଧୀରେ ଝଲମଲ କରି ଉଠିଲା ଶୁଭ୍ର ଶିଶିରର ବିନ୍ଦୁ ।

"ସେମାନେ କଣ ସବୁ ଶୋଇପଡ଼ିଲେଣି କି ?"

"ହଁ, ସମସ୍ତେ ଶୋଇପଡ଼ିଲେଣି ।"

ଚିର ସଜାଗ ସର୍ଦ୍ଦାରର ପରି ବୃଦ୍ଧ ଆଖି ବୁଲାଇ ଆଣିଲେ ତାଙ୍କର ଆଖି ଆଗରେ ମାଟି ଉପରେ ଶୋଇ ରହିଥିବା ତରୁଣୀମାନଙ୍କ ଉପରେ । ସିନ୍ଦୂରା ଫାଟିବା ପୂର୍ବରୁ ସେ ସେମାନଙ୍କୁ ସାଙ୍ଗରେ ନେଇ ଡୋଗ୍ରୁଡ଼ୁଗା ଆଡ଼କୁ ଚାଲିଯିବେ ଗହମ କାଟିବା ପାଇଁ । ଗାଁର ଏଇ ଝିଅମାନେ ବେଶ୍ ଆରାମରେ ଉଷୁମ ଚାଣି ଶୋଇ ରହିଛନ୍ତି । ଅର୍ଦ୍ଧନିମୀଳିତ ଆଖି, ଶୁଷ୍କ ଅଧର । ନରମ ପୀତାଭ ଆଲୋକରେ ଈଷତ୍ ଉଜ୍ଜ୍ୱଳ ହୋଇ ଉଠୁଛି କୃଷ୍ଣାଭ ମୁଖମଣ୍ଡଳ ସେମାନଙ୍କର ।

"ତତେ କାହିଁକି ନିଦ ମାଡୁନାହିଁ କରେ ?"

"ନାଇଁ, ମତେ ନିଦ ମାଡୁନାହିଁ । କହିଲ ଦେଖି, ଏମିତି ମୋର ଭଳିଆ ଶ୍ରେଣୀ ମୁଦ୍ରା କଣ ଆଉ କାହା ପାଖରେ ଅଛି ?"

"ନାଁ ପୃଥିବୀରେ ଏଇ ମାତ୍ର ଗୋଟିଏ ତୋର । ଆଉ ଯାହା ବେକରେ ସେଇଟି ଅଛି ସେ ସବୁଠୁ ଭାଗ୍ୟବତୀ !"

"କାହିଁକି ?"

"କାହିଁକି ନା ସେଇଟା ମୋର ନୁହଁ ।"

ବଡ଼ାପା ଆଣ୍ଠୁ ଉପରେ ମଥା ଥୋଇଲା ଭେଲ୍ନା ।

"ମାମା କଣ ବଡ଼ ଅସାଧାରଣ ଝିଅ ଥିଲା ?"

"ହଁ, ଏମିତି ଅସାଧାରଣ ଝିଅ ଆଉ କେଉଁଠି କେବେ ନଥିବ ।"

ହେଲେନା ଅଜାଙ୍କର ଛାତି ଭିତରୁ ଅତି ନିଃଶବ୍ଦରେ ଗୋଟାଏ କୋହ ଉଠି ଆସିଲା । ଆହୁରି ଜୀବନ୍ତ ହୋଇ ଉଠିଲା ତାଙ୍କର ଆଖି ଦି'ଟା । ସେଇ ଆଖି ଭିତରେ ଜଳି ଉଠିଲା କେଉଁ ଦୂର ଦୂର ଅତୀତର ଗୋଟାଏ ସ୍ମୃତି, ଯାହା ଚାଲି ଯାଇଛି, ଯାହା ଆଉ ଫେରି ଆସିବ ନାହିଁ ଆଉ କେବେ । ଏହି ଆନତ ଶାଳ୍ମଳୀ ତରୁ ତ ଆଉ ତରୁଣ ହୋଇ ଉଠିବ ନାହିଁ କେବେ !

"ମୁଁ କଣ ତାର ଭଉଣୀ ଦେଖିବାକୁ ?" ପଚାରିଲା ଭେଲକା ।

"ତୋ ମାଆ ପରି ?"

ବୃଦ୍ଧ ଟିକଏ ଝୁଙ୍କି ପଡ଼ିଲେ । ଗୋଟିଏ ସ୍ପନ୍ଦିତ ପକ୍ଷର ସୁକୋମଳ ପ୍ରାଣର ଉଷ୍ମ ନିଃଶ୍ୱାସ ସ୍ପର୍ଶ କରିଗଲା ତାଙ୍କର ମୁହଁକୁ । ବୃଦ୍ଧଙ୍କର ସର୍ବାଙ୍ଗ ଶିହରି ଉଠିଲା—ଠିକ୍ ସେଇ ଶିହରଣ । ଠିକ୍ ତ ଅବିକଳ ତାର ମାଆର ପ୍ରତିଛବି, ସତେ ଯେମିତି ସେ ଆଜି ଏଇ କଣୋଣୀ ଦୁଇଟି ଜଳବିନ୍ଦୁ ।

"ଭେଲକା..."

ଇଚ୍ଛା ହେଲା ଏଇଠି ତାକୁ ଫିଟାଇ ସବୁକଥା କହିଦେବେ ସେ ।

ଶୁଣୁ, ଝିଅ, ମୁଁ ଏଇ ପାହାଡ଼ ଉପର ଦେଇ ଯାଉଛୁ । ତୋ ମାଆ ତ ଅନେକ ଦିନୁ ଚାଲିଗଲାଣି । ମୋ ବିଷୟରେ ତତେ କଣ ସିଏ କେବେ କିଛି କହିନାହିଁ ?"

"ନାଇଁ ବଡ଼ାପା !"

"ହଉ । ଠିକ୍ କରିଛୁ । ତୋ ମାଆ ସବୁବେଳେ ସେମିତି । ସବୁକଥା ସବୁବେଳେ ସେ ପେଟରେ ରଖିଥାଏ । କାହାକୁ କିଛି କହେ ନାହିଁ । କେତେଦିନ ବିତି ଗଲାଣି । କେଉଁଠି କେତେ କ'ଣ ବଦଳିଗଲାଣି । କିନ୍ତୁ ସେଦିନର ସ୍ମୃତି—ଆଃ, ମୁଁ ତାକୁ ଭୁଲି ପାରିବି ନାହିଁ କେବେ—ମନେ ହେଉଛି ଯେମିତି କାଲିକାର ଘଟଣା ।"

"କ'ଣ ବଡ଼ପା ?"

"କାହିଁକି, ସେଇ । ସେଇ ଝରଣା । ତୁ ତ ଏଇନେ ଛୁଆ । ହୁଏତ ଆଜି ଦିନେ କେବେ ତୁ ଏଇ ବାଟ ଦେଇ ଯାଇପାରୁ । ଠିକ୍ ଏଇ ଶାଲ୍ମଳୀଗଛ ତଳେ । ଗଛଟା କେଉଁ କାଳରୁ ଆସି ହେଲାଣି—ଏତେ ବୁଢ଼ା ଆସି ହେଲାଣି ଯେ ତାର ବୟସ ସେ ନିଜେ ଭୁଲିଗଲାଣି । କିନ୍ତୁ ସେତେ-ବେଳେ ଗଛଟା ଜବାନ୍ ଥିଲା । ତାର ଶାଖା ଗୁଡ଼ାକ ଥିଲା ଭାରି କଅଁଳ, ଭାରି ନରମ । ପବନ ହେଲେ ଶାଖାଗୁଡ଼ାକ ଗୀତ ଗାଇ ଉଠୁଥିଲେ । ସେତେବେଳେ ବେଲନ୍ ଉପତ୍ୟକାର ଚାରିଆଡ଼େ ଜଳି ଉଠୁଥିଲା ପାଚିଲା ପାଚିଲା ଗହମର ଖେତ । ରାସ୍ତାର ଧାରେ ଧାରେ ଗହମ ଖେତର ଫାଙ୍କେ ଫାଙ୍କେ ଲିଚୁ କୋଳର ଗଛଗୁଡ଼ାକ ଫଳରେ ଭାରାକ୍ରାନ୍ତ ହୋଇ ତଳକୁ ଝୁଲି ପଡ଼ୁଥିଲା ଠିକ୍ ଦ୍ରାକ୍ଷାଲତା ପରି । ଯେତେ ଚାହିଁବ ସେତେ ତୋଳି ପାରିବ ।"

ବୃଦ୍ଧ ନୀରବ ହୋଇଗଲେ କେତୋଟି ମୁହୂର୍ତ୍ତ ପାଇଁ ।

ତାପରେ ପୁଣି କହିଲେ, "ଏଇ ବାଟ ଦେଇ କେବେ ତୁ ଯଦି ଫେରୁ, ତାହେଲେ ଏଇଠି ଟିକେ ଅଟକ ଯାଇ କହିବୁ, ଭଗବାନ ତାଙ୍କୁ ରକ୍ଷା କର । ନ କହିଲେ ତୋର ଆଉ କ୍ଷମା ନାହିଁ ।"

"ଭଗବାନ କାହାକୁ ରକ୍ଷା କରିବେ ବଡ଼ବାପା ?"

"ମତେ, ଆଉ କାହାକୁ !"

"କଣ ତମେ କହୁଛ ବଡ଼ବାପା ?"

"ନାଇଁ, ନାଇଁ, କିଛି ନାହିଁ । ତୁ ଯା' ଶୋଇବୁ ।"

ବୃଦ୍ଧ ପୁଣି ନୀରବ ହୋଇଗଲେ । ଭେଲ୍‌ର କପାଳ ଉପରେ ହାତ ବୁଲେଇ ତାକୁ ଆଉଁସି ଦେଲେ । ତାପରେ ଧୀରେ ଧୀରେ ନିଜକୁ ପୁଣି ହଜେଇ ଦେଲେ ନିଜ ମନର ଅସୀମ ଶୂନ୍ୟତା ଭିତରେ ।

ବହୁଦିନ ତଳେ···ଏମିତି ଗୋଟିଏ ସନ୍ଧ୍ୟାରେ ଟସ ଆଉ କୋଲିଓ ଦୁଇଟି କଳା ଘୋଡ଼ା ନେଇ ବାହାରିଥିଲେ । ଚକ୍‌ଚକ ଦୁଇଟା କଳା ଘୋଡ଼ା । ପିଚୁ ପରି ଝଲମଲ ହେଉଛି ସେମାନଙ୍କର ପିଠି । ଦୁଇଭାଇ, ଦହେଁ ତରୁଣ । ବଡଭାଇର ମନଟା କାହିଁକି ଭାରି ଆନନ୍ଦିତ ହୋଇ ଉଠୁଛି । ଅସୀମ ଉଲ୍ଲାସରେ ନାଚି ଉଠୁଛି ତାର ପ୍ରାଣ । କିନ୍ତୁ ଗ୍ଲେଟ ଭାଇ ଜାଣି ନଥିଲା ସେମାନେ କୁଆଡ଼େ ଯାଉଛନ୍ତି, କାହିଁକି ଯାଉଛନ୍ତି । ଘୋଡ଼ା ପିଠିରେ ବସି ଯାଇ ପ୍ରଥମ ଚାବୁକ ସେମାନେ ପିଟିଛନ୍ତି କି ନାହିଁ ସାନଭାଇର ଘୋଡ଼ାଟା କାହିଁକି ତାର ବାଁ ଗୋଡଟା ଟେକି ଖୁରାରେ ମାଟି ତାଡ଼ିବାକୁ ଲାଗିଲା । ଏଇଟା କିଛି ଶୁଭ ଲକ୍ଷଣ ନୁହଁ । ଘୋଡ଼ା ବାଁଖୁରା ଟେକି ମାଟି ଉଖାରିଲେ ପଛକୁ ଫେରି ଘରକୁ ଚାଲିଯିବା କଥା । କିନ୍ତୁ ସେମାନେ ଫେରିଲେ ନାହିଁ ।

ଆଗେଇ ଚାଲିଲେ ସେମାନେ । ଘେନୋ ଆଉ କୋଲିଓ କ୍ଷେତ ପରେ କ୍ଷେତ ପାର ହୋଇ ଉଡ଼ି ଚାଲିଲେ । ତାଙ୍କର ମଥା ଉପରେ ତାଙ୍କ ସହିତ ଭାସି ଭାସି ଚାଲିଲା ଆକାଶର ଜହ୍ନ । ତାରା ଗୁଡ଼ାକ ଝରି ଝରି ପଡ଼ିଲେ ଗହମ କ୍ଷେତର ସୁନେଲି ଆବର୍ତ୍ତ ଭିତରକୁ ।

କୋଲଓ ପଗ୍ଭରିଲା, "ତମେ କୁଆଡ଼େ ଯାଉଛ, ଭାଇ ?"

'ଡେରକ୍ଲ୍ୟାଣ୍ଡ ଗାଁର ଗୋଟିଏ ଝିଅକୁ ଗ୍ଭେରିକରି ଆଣିବା ପାଇଁ ।

"କୋଉ ଝିଅକୁ ?"

"ଅନୁମାନ କରୁ ଦେଖି ।"

"କୋଉ ଘରେ ସିଏ ରହେ ?"

"ସେଇ ଗୀର୍ଜା ପାଖରେ, ବଡ଼ ଘରଟାରେ ।"

"ରାଦା ଭ୍ଲ୍ୟାଭ୍ ?"

"ହଁ ।"

କୋଲଓ ହଠାତ୍ ଘୋଡ଼ାର ଲଗାମ ଟାଣିଦେଇ ପଛକୁ ବୁଲି ଗ୍ଭହିଁଲା । "ରହ, ଭାଇ, ଫେରିଯିବା ଗ୍ଭଲ ।"

ଘେନୋ ମୁହଁରେ ଫୁଟିଉଠିଲା ବଦ୍ରୁପର ଗୋଟାଏ ହସ । "ଆମ କୋଲଓ କଣ ହଠାତ୍ ଗ୍ଭନିଆ ହୋଇଗଲା କିରେ ? ହଉ, ତା ହେଲେ ସିଏ ଗାଁ ବାହାରେ ଅପେକ୍ଷା କରୁ । ମୁଁ ଏକାକୀ ମୋ କାମ ତୁଟେଇଦେଇ ପାରିବ । ମତେ ଆଜି ତୁ ଅଟକାନା, ଗ୍ଭନ୍ଦ ପାହିବାକୁ ଆଉ ବେଶି ସମୟ ବାକି ନାହିଁ ।"

ତାପରେ ସେ ପଛକୁ ମୁହଁ ବୁଲାଇ ଗ୍ଭହିଁଲା ସାନ ଭାଇକୁ । ଗ୍ଲେଟ ଭାଇର ଆଖିହଟା ଦାଉ ଦାଉ ହୋଇ ଜଳୁଛି ଜଳନ୍ତା କୋଇଲା ଖଣ୍ଡପରି । ସେ ଆଖିଲେ ହିଂସ୍ର ବ୍ୟାଘ୍ରର ଗ୍ଭହାଣୀ । ଡାହାଣ ହାତରେ ସେ ଘୋଡ଼ାର କେଶର ଉପରୁ କେଇ କେଇ ବାଳ ଟାଣୁଛି । "କହେ ତୁ ଆସିବୁ ନା ନାହିଁ ?"

ଘେନୋ ଏକାକୀ ଆଗେଇ ଗଲା ନିଜ ଘୋଡ଼ା ଉପରେ । କିନ୍ତୁ ସେ ପ୍ରାୟ ଶହେ କଦମ୍ ଯାଇଛି କି ନାହିଁ ହଠାତ୍ ଚାଳି କରି ଦେଇ କୋଲଓ ତାକୁ ଝଡ଼ ବେଗରେ ଅତିକ୍ରମ କରିଗଲା । "ଆସ, ଆ···ସ !"

"ବଚା ଠିକ୍ ଅଛୁ !" କହି ଉଠିଲା ଘେନୋ ।

ନିଆଁ କାଉ କାଉ ଆସିଲାଣି । ଘାସର ଗ୍ଲେଟ ପଡ଼ିଆକୁ ଘେରି ଘେରି ଆସୁଛି ଅନ୍ଧାର । ଶାଲୁଳୀ ଗଛଟି କଳା ମର୍ ମର୍ ଅନ୍ଧାର ଭିତରେ

ଆସ୍ତେ ଆସ୍ତେ ମିଳେଇ ଯାଉଛି । ସୁପ୍ତା ତରୁଣୀ ଦଳର କୃଷ୍ଣାଭ ମୁଖମଣ୍ଡଳ ଆଚ୍ଛନ୍ନ ହୋଇ ଆସୁଛି ଗାଢ଼ ତମିସ୍ରାରେ । କିଛି ସମୟ ପର୍ଯ୍ୟନ୍ତ ଘେନୋ ଅଜା ଦରପୋଡ଼ା ବାଡ଼ିଟାରେ ନିଆଁକୁ ଉଖୁରେଇ ଲାଗିଲେ । କୋଳରେ ତାଙ୍କର ଆଖି ବୁଜି ଦେଲାଣି ଭେଲ୍‌ଲା । ବୃଦ୍ଧଙ୍କର ଇଚ୍ଛା ହେଲା ତା କାନ ପାଖେ ଭୁନ ଭୁନ ଆଜି ସବୁ କଥା କହିଦେବେ । କିନ୍ତୁ ଭରସା ପାଇଲା ନାହିଁ । ନଇଁପଡ଼ି ଘୁମନ୍ତ ଭେଲ୍‌ଲାର ମୁହଁକୁ ସେ ନିରେଖି ନିରେଖି ଗ୍ଣହିଁଲେ—ଅନେକ ସମୟ ପର୍ଯ୍ୟନ୍ତ । କି ସ୍ୱପ୍ନ ଦେଖୁଛି ଭେଲ୍‌ଲା ?

ମର୍ମରିତ ହୋଇ ଉଠିଲା ଶାଳ୍ମଳୀ ତରୁର ପତ୍ରଗୁଡ଼ାକ । ମନରେ ପୁଣି ଚହଲିଗଲା ଆଜି ଗୋଟାଏ ସ୍ମୃତି ।

ସେମାନେ ଫେରି ଆସୁଛନ୍ତି । ଘେନୋ ଆଗରେ ତାର ଘୋଡ଼ା ଉପରେ ପଡ଼ିଛି ସେଇ ଝିଅଟି—ଭେଲ୍‌ଲାର ମାଆ । ଏଇଠି ଏଇ ଘାସ ଉପରେ ସେଦିନ ରାତିରେ ଅଟକି ଯାଇଥିଲେ ସେମାନେ । ଘୋଡ଼ାଦିଟା ଥରୁଥାନ୍ତି କ୍ଳାନ୍ତ ଅବସନ୍ନ ହୋଇ । ସର୍ବାଙ୍ଗ ଶରୀର ସେମାନଙ୍କର ଫେନାପ୍ଲୁତ ହୋଇ ଉଠିଥାଏ । ଚରିବାପାଇଁ ଘୋଡ଼ାଦିଟାଙ୍କୁ ଫିଟାଇ ଦେଲେ ସେମାନେ । କୋଲ୍‌ଓ ଗଲା ଘୋଡ଼ାଦିଟା ପଛେ ପଛେ ଜହ୍ନ ଆଲୁଅରେ । କିଛି ସମୟପରେ ସେ ଉଭେଇଗଲା ସେମାନଙ୍କର ଦୃଷ୍ଟି ପଥରୁ । ଆଜି ସେଇଠି କେବଳ ରହିଲେ ଘେନୋ ଆଉ ସେଇ ଝିଅଟି । ଆଜି ବି ସ୍ପଷ୍ଟ ମନେ ପଡ଼େ ସେଇ ପ୍ରଥମ ରାତିରେ ସେଇ ଝିଅଟି କେମିତି ଶିହରି ଉଠୁଥିଲା ! ଆଖିରେ ତାର ହଜିଯାଇ ଥିଲା ଅଗଣିତ ତାରକାର ସ୍ରୋତ । ହୃଦୟରେ ତାର ପକ୍ଷୀର ଡେଣାର ସ୍ପନ୍ଦନ । ତାର ପାଖରେ ବସି ପଡ଼ିଲା ଘେନୋ । ଆସ୍ତେ ଆସ୍ତେ ତାର ଲଲାଟ ଉପରେ ହାତ ବୁଲାଇ ଆଣିଲା । ମନେ ହେଲା ତରୁଣୀର ମଥାଟା ଯେମିତି ଘରି ଉତ୍ତପ୍ତ ହୋଇ ଉଠିଛି ହଠାତ୍ । ସତେ ଯେମିତି କେଉଁ ଏକ ଅଜଣା ଅଗ୍ନିଶିଖାରେ ଦଗ୍‌ଧ ହୋଇ ଯାଇଛି ତାର ଲଲାଟ । ସେମାନଙ୍କର ମୁଣ୍ଡ ଉପରେ ନଇଁ ଆସିଛି ସେ ବନର ସେଇ ତରୁଣ ଶାଳ୍ମଳୀ ଗଛଟାର ନିବିଡ଼ ଛାଇ । ସେଇ ଛାଇରେ ଦୁଇଟି ପ୍ରାଣକୁ ସେ ଆଚ୍ଛନ୍ନ କରି ଦେଉଛି । ଘେନୋ ତାକୁ କଣ କହିବ, କେମିତି କେଉଁ କଥା ଆରମ୍ଭ କରିବ କିଛି ବୁଝି ପାରିଲା ନାହିଁ । କୁମାରୀ ତାର ବଧୂ ହେବାକୁ ଯାଉଛି ଅଥଚ ସେ ଜାଣେନା ତା ସହିତ କେମିତି ଆଳାପ ଆରମ୍ଭ କରିବ ସେ । ଧୀରେ ଧୀରେ କୁମାରୀର ତନୁଲତା ଉପରେ ସେ ଘେରେଇ ଆଣିଲା

ତାର ଦୁଇ ବାହୁ, ତାର ମୁହଁଟା ନଇଁ ଆସିଲା କୁମାରୀର ବୁକୁ ଉପରକୁ । ହଠାତ୍ ଗୋଟାଏ କ୍ଷୁଦ୍ର ଗୋଲାକାର ଶୀତଳ ବସ୍ତୁର ସ୍ପର୍ଶ ଲାଗିଲା ତାର ଲଲାଟରେ । ଆଙ୍ଗୁଠିରେ କୁମାରୀର କଣ୍ଠ ହାରଟିକୁ ଅଣ୍ଡାଳୁ ଅଣ୍ଡାଳୁ ଧେନୋ ଅନୁଭବ କଲା ସେଇ ଯୋହଲାର ହାର ମଝିରେ ଗୋଟିଏ କ୍ଷୁଦ୍ର ଚକ୍ତି—ଗୋଟିଏ ମୁଦ୍ରା । ସେଇ ମୁଦ୍ରା ଉପରେ ଆଖି ପଡ଼ିଗଲାକ୍ଷଣି ଚମକି ଉଠିଲା ଧେନୋ । ସେତ ତାରି ମାଆର । ଯାକୁ ଏଇ ତରୁଣୀ ପାଇଲା କେମିତି ! ମନେ ହେଲା ତାର ପ୍ରାଣତନ୍ତ୍ରୀ ଭିତରେ କେଉଁଠି ଗୋଟାଏ ତାର ଯେମିତି ଛିନ୍ନ ହୋଇ ଯାଉଚି ।

ଆଶ୍ଚର୍ଯ୍ୟ ହୋଇ ପଚାରିଲା ଧେନୋ, "କେଉଁଠୁଁ ପାଇଲୁ ତୁ ଏଇଟା ?"

ତା ପ୍ରଶ୍ନର କୌଣସି ଉତ୍ତର ସେ ପାଇଲା ନାହିଁ ।

"କହ, କିଏ ତତେ ଦେଲା ଏଇଟା ?"

ପ୍ରଶ୍ନର ଉତ୍ତର ଦେବା ପରିବର୍ତ୍ତେ ତରୁଣୀ ଏକ ଉନ୍ମତ୍ତ ଉଦ୍ଦାମ ଆବେଗରେ ଝୁଲିପଡ଼ିଲା ଧେନୋର ଗଳା ଉପରେ । ଦୁଇଟି ଉତ୍ତପ୍ତ ବାହୁର ଆଶ୍ଳେଷରେ ତାକୁ ସେ ଉତଳା କରିଦେଲା, ଉନ୍ମାଦ କରିଦେଲା । ଧେନୋ ହଜିଗଲା, ଧୀରେ ଧୀରେ ହଜିଗଲା ଏକ ସର୍ବସ୍ୱାନ୍ତ ବିଲୁପ୍ତିର ମହାଶୂନ୍ୟତା ଭିତରେ । ପ୍ରାଣର ଆଉ ଆତ୍ମାର ଏମିତି ଆଗ୍ନେୟ ଦାହନ ସେ ଅନୁଭବ କରି ନଥିଲା କେବେ ।

ଧେନୋର ନିଦ ଯେତେବେଳେ ଭାଙ୍ଗିଲା ଧେନୋ ପାଖରେ ହାତମାରି ଖୋଜିଲା ତରୁଣୀକୁ । କିନ୍ତୁ ତରୁଣୀ ପାଖରେ ନାହିଁ । କୁଆଡେ ଚାଲିଗଲାଣି । ଧେନୋ ଧଡ଼ପଡ଼ ହୋଇ ଉଠି ଠିଆ ହୋଇ ପଡ଼ିଲା । ଲନ୍ଧ ତନ୍ଧ କରି ଚାହିଁଲା ଚାରିଆଡ଼କୁ । କେହି କୁଆଡ଼େ ନାହିଁ । ଚତୁର୍ଦ୍ଦିଗ ନିର୍ଜନ । କେବଳ ଭାସି ଆସୁଚି ଝରଣାର ସ୍ପଷ୍ଟ କୁଳୁକୁଳୁ ନିନାଦ । କଣ ହେଲା ସେ ? କିଛି ବୁଝି ପାରିଲା ନାହିଁ ଧେନୋ । ହଠାତ୍ ଘୋଡ଼ାଟା ତାର ମୁଣ୍ଡ ଟେକି ଧୁଡ଼୍ ଧୁଡ଼୍ ହେଲା କେଉଁଠି । ଧେନୋ ଦେଖିଲାବେଳକୁ କୋଲଥର ଘୋଡ଼ା ନାହିଁ କି କୋଲଥ ନାହିଁ ଆଉ ସେଇ ତରୁଣୀ ମଧ୍ୟ ନାହିଁ ।

ପଳାଇ ଯାଇଛନ୍ତି ସେମାନେ ।

ହିଂସ୍ର ଶ୍ୱାପଦ ପରି ଘୃଣିଆଡେ ଆଉଥରେ ଆଖି ବୁଲେଇ ଆଣିଲା ଘେନୋ । ଝରଣା କୂଳରେ ପଥର ଉପରେ ଲିଚୁକୋଳିର ଗୋଟାଏ ଡାଳ ଭଙ୍ଗା ହୋଇ ଥୁଆ ହୋଇଛି । ଡାଳଯାକ ପାଚିଲା ଲିଚୁକୋଳିରେ ଭର୍ତ୍ତି । କିଏ ହୁଏତ ତୋଳି ଦେଇ ଭୁଲି ଚାଲିଯାଇଛି ।

ଆହତ ହିଂସ୍ର ବ୍ୟାଘ୍ର ପରି ସେ ଚିତ୍କାର କରି ଉଠିଲା । ତାର ସେଇ ଗର୍ଜନରେ ମନେ ହେଲା ଆକାଶ ଯେମିତି ବିଦୀର୍ଣ୍ଣ ହୋଇଯିବ । ହାତଟା ତାର ହଠାତ୍ ଯାଇ ପଡ଼ିଲା ଛୁରୀ ଉପରେ । ଛୁରୀଟାକୁ କାଢ଼ିଆଣି ସାମନାରେ ହଲେଇ ହଲେଇ ସେ ତାକୁ ଦେଖିଲା, ପୁଣି ତାକୁ ରାସ୍ତା ଉପରେ ଫୋପାଡ଼ି ଦେଲା । ନଇଁପଡ଼ି ପୁଣି ସେ ଦେଖିବାକୁ ଲାଗିଲା ସେଇ ଛୁରୀଟାକୁ । ଛୁରୀର ଶାଣିତ ଇସ୍ପାତଟା ଝକ୍ ଝକ୍ କରୁଛି । ତାର ଉପରେ ଚକ୍ ଚକ୍ କରି ଭାସି ଯାଉଛି ଜହ୍ନ ଆଉ ତାରି ସଙ୍ଗେ ସଙ୍ଗେ ଘେନୋର ମୁଣ୍ଡଟାବି ଉଡ଼ି ଉଡ଼ି ଚାଲିଯାଉଛି । ଘେନୋ ସେଇଠି ମୁହଁମାଡ଼ି ପଡ଼ିଗଲା । ଆଙ୍ଗୁଠିଗୁଡ଼ାକୁ ଟାଣ ଟାଣ ଲୁହାକଣ୍ଟା ପରି କରିଦେଇ ମାଟି ତାଡ଼ିବାକୁ ଲାଗିଲା । ମାଟିଟାକୁ କାମୁଡ଼ି କାମୁଡ଼ି ଧୂଳିମାଟି ଖାଇ ଖାଇ ପଡ଼ିରହିଲା ଘେନୋ ସେଇଠି ।

ଘେନୋର ଚେତା ଆସିଲା ବେଳକୁ ଧୂସର ଆକାଶ ନୀଳହୋଇ ଆସିଲାଣି । ଆଖିଦିଟା ତାର ଉଜ୍ଜ୍ୱଳ ହୋଇ ଆସିଛି, ସତେ ଯେମିତି ସେ ତାର ମାଆର କବର ଦେଖି ଏଇ ମାତ୍ର ଫେରି ଆସିଛି । ଆଖି ଆଗରେ ତାର ଶିଶିରସ୍ନାତ ଗହମ ଶିଷାର ହିଲ୍ଲୋଳ, ଉଷାର ଲୋହିତ ଆଭାରେ ଶିଖାୟିତ ହୋଇ ଉଠିଛି । ତାରି ପଛରେ ପାହାଡ଼ ଉପରେ ସେଇ ଅଶ୍ୱପାଳକ ତରୁଣଦଳର ପଲ୍ଲୀ । ତାରି ଉପର ଦେଇ ଭାସି ଯାଉଛି ନୀଳ ନୀଳ ଧୂଆଁର ଟୁକୁରାଏ ବାଦଲ । ଘେନୋ କିନ୍ତୁ ଗଲା ନାହିଁ ସେଇ ପଲ୍ଲୀ ଆଡ଼େ । ଘୋଡ଼ା ଉପରେ ଚଢ଼ି ସେ ଚାଲିଗଲା ଗହମ କ୍ଷେତର ସାଗର ପାର ହୋଇ, ଡାନ୍ୟୁବ ନଦୀର ତୀରେ ତୀରେ ବୁଲ୍‌ଗେରିଆର ସୀମାନ୍ତ ପାଖକୁ । ସେଇଠି ଘୋଡ଼ାଟାକୁ ଛାଡ଼ି ଦେଇ ସୀମାନ୍ତ ପାର ହୋଇ ସେ ଚାଲିଗଲା ରୁମାନିଆ ଦେଶକୁ ।

ବୃଦ୍ଧଙ୍କର ଛାତି ଭିତରୁ ଗୋଟାଏ ଦୀର୍ଘନିଃଶ୍ୱାସ ବାହାରି ଆସିଲା । ତାଙ୍କର ଆଖି ଆଗରେ ଲମ୍ବିଗଲା ବର୍ଷ ପରେ ବର୍ଷ, ବହୁବର୍ଷ—ଅଜଣା ଅଶୁଣା ଅପରିଚିତ ଦେଶରେ ତାଙ୍କର କଠୋର ଜୀବନର ବର୍ଷ ଗୁଡ଼ାକ ।

ଅଶ୍ରତର ଏବ୍ତ ଧୂଳିଗଦାକୁ ସେ ମନ ଅଙ୍ଗୁଳିରେ ତାଡ଼ିବାକୁ ଲଗିଲେ କାଳେ ତାର ଭିତରୁ ଦୁଇଟି ନରମ ନରମ ଆଖି ହୁଏତ ମିଳି ଯାଇପାରେ । ନଅଟି ନିଃସଙ୍ଗ ବର୍ଷ ସେଇଠି ବିତିଯାଇଥିଲା ତାଙ୍କର । ନଅଟି ନିଃସଙ୍ଗ ବର୍ଷ ! ହୃଦୟ୍ତ ତାଙ୍କର ପଥର ପାଲଟି ଯାଇଥିଲା ସେଇ ନଅଟି ବର୍ଷ ଭିତରେ !

ନଅବର୍ଷ ପରେ ସେ ଫେରି ଆସିଲେ ଘରକୁ । ବାପାଙ୍କ ବଗିଚାର ଫାଟକ ଖୋଲି ଦେଲା ଭିତରେ ପଶିବାକ୍ଷଣି ଗୋଟାଏ ବୁଢ଼ା କୁକୁର ଭୁକି ଭୁକି ମିଶି ଆସିଲା ତାଙ୍କ ଉପରକୁ । କିନ୍ତୁ ସଙ୍ଗେ ସଙ୍ଗେ ଆଗନ୍ତୁକକୁ ଚିହ୍ନି ପାରି କୁକୁରଟି ଡବ ଡବ ଆଖିରେ ଅନେଇ ରହିଲା ତାଙ୍କ ଆଡ଼କୁ । ସେନୋ ଦେଖିଲେ ବଗିଚାର ଗୁଡ଼ ଗଛତଳେ ଗ୍ରେଟ ଝିଅଟିଏ—କଳା କଳା ଆଖି, ଝାମ୍ପୁରା ଝାମ୍ପୁରା ବାଳ । ଡକ୍ରୁ ଗ୍ରେଟ ଗ୍ରେଟ ପଥର ଗୋଟେଇ ଗୋଟେଇ ଅଣ୍ଟିରେ ପୂରାଉ ପୂରାଉ ହାଁ କରି ସେ ଅନେଇ ରହିଛି ତାଙ୍କ ଆଡ଼କୁ ।

"ସେଇ ଝିଅଟି ତୁରେ, ଭେଲ୍‌ଲ !"

ସେଦିନ ଝିଅଟିର କପାଳକୁ ଧୀରେ ଧୀରେ ଓଠରେ ଛୁଇଁ ଦେଇ ସେନୋ ସବୁ କିଛି କ୍ଷମା କରି ଦେଇଥିଲେ । ନିଜର ଗ୍ରେଟ ଭାଇକୁ କ୍ଷମା କରିବା କଣ ଅସମ୍ଭବ ?

ବଡ଼ାପା ସେନୋ ପୁଣି ଥରେ ନଇଁପଡ଼ି ଚୁମ୍ବିଲେ ଭେଲ୍‌ଲାକୁ । ଭେଲ୍‌ଲା ଶୋଇଛି, ବେଶ୍ ଆରାମରେ ଶୋଇଛି । ତା ଉପରେ ନିଜର ବଡ଼ କୋଟ୍‌ଟାକୁ ଘୋଡ଼େଇ ଦେଇ ସେନୋ ତାର ପାଖରେ ଶୋଇ ପଡ଼ିଲେ ।

ଉପରେ, ବହୁ ଉପରେ କଳା ମରମର୍ ଆକାଶ । ଧୀରେ ଧୀରେ ମାଡ଼ି ମାଡ଼ି ଆସୁଛି ତାଙ୍କର ଉପରକୁ । ଆଉ ତାର ଭିତରେ ଗୋଟିଏ ଗ୍ରେଟ ମୁଦ୍ରା—ସବୁଠାରୁ ମୂଲ୍ୟବାନ ଏକ କଣ୍ଠହାରରୁ ଖସି ପଡ଼ିଥିବା ଗୋଟିଏ ଗ୍ରେଟ ମୁଦ୍ରା—ଧୀରେ ଧୀରେ ଭାସି ଭାସି ଗ୍ଭଲିଯାଉଛି ଅଜଣା କେଉଁ ଦେଶକୁ, ଦୂର ଦୁରାନ୍ତର କେଉଁ ଦେଶକୁ ।



# ଶୀତଦାସର ବସନ୍ତ

ଇଭାନ୍ ଓଷ୍ଟ୍ରିକୋଭ୍

[ ଇଭାନ୍ ଓଷ୍ଟ୍ରିକୋଭ୍ ଯୁଗୋସ୍ଲାଭିଆର ଅନ୍ୟତମ ଖ୍ୟାତନାମା ଲେଖକ । ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପର ସ୍ରଷ୍ଟା ହିସାବରେ ସେ ଦେଶ ବିଦେଶରେ ସୁପରିଚିତ । ]

ଅତି କଠୋର, ଅତି ଦାରୁଣ ଏହି ଦାସତ୍ୱର ଦିନଗୁଡ଼ାକ । ମନେହୁଏ ସମସ୍ତ ଦିନ ନୁହେଁ, ମାସ ନୁହେଁ, ବର୍ଷ ନୁହେଁ, ସମସ୍ତ ଯେମିତି ପଥର ଉପରେ ପଥର ହୋଇ ଶ୍ରମିକମାନଙ୍କର କ୍ଳାନ୍ତ ଆନତ ସ୍କନ୍ଧ ଉପରେ ଜମା ହୋଇ ଗଦା ହୋଇଯାଇଛି । ଏହି ଦାରୁଣ ଦୁର୍ଦ୍ଦିନ କେବେ କେମିତି ଆରମ୍ଭ ହେଲା ତା ଆଉ କାହାର ମନେ ନାହିଁ କି ଏହି ଦୁର୍ଦ୍ଦିନର ଅବସାନ କେବେ ହେବ ତା କେହି ଜାଣେ ନାହିଁ ।

କିନ୍ତୁ ଏହି ଶ୍ରମିକମାନଙ୍କ ଭିତରେ ଏମିତି କେତେ ଜଣ ଥିଲେ ଯେଉଁମାନେ ଏହି ଦୁର୍ଦ୍ଦିନକୁ ବରଦାସ୍ତ କରିବା ପାଇଁ ଆଉ ପ୍ରସ୍ତୁତ ନ ଥିଲେ । ସେମାନେ ଘରଦ୍ୱାର ପିଲାକବିଲା ବନ୍ଧୁବାନ୍ଧବ ସମସ୍ତଙ୍କୁ ଛାଡ଼ିଦେଇ ବଣ ଜଙ୍ଗଲ ପାହାଡ଼ ପର୍ବତକୁ ପଳେଇଥିଲେ । ସେମାନଙ୍କର ସଂଖ୍ୟା କେତେ ହେବ ? କିଏ ଜାଣେ କେତେ ! ବେଳାଭୂମିର ଦୁଇତିନିଟା ଉପଲ ଖଣ୍ଡ ଗୋଟେଇ ନେଇ ସମୁଦ୍ର ଭିତରେ ନିକ୍ଷେପକରି କେହି କ'ଣ କେବେ ସାଗର ବୁକୁରେ ଉତ୍ତାଳ ତରଙ୍ଗ ସୃଷ୍ଟି କରି ପାରିଲାଣି ? ବ୍ୟର୍ଥ ସେମାନଙ୍କର ପଳାୟନ । ଅଜଣା ଅଶୁଣା ଅର୍ଥହୀନ ଭାବରେ ବ୍ୟର୍ଥ ହତାଶ ହୋଇ ସେମାନେ କେବେ କେଉଁଠି ଧ୍ୱଂସପାଇ ଯାଉଥିଲେ ନଚେତ୍ ବା ବର୍ଚ୍ଛାମୂନରେ ସେମାନଙ୍କର କଟାମୁଣ୍ଡ ଝୁଲୁହୋଇ ଗାଁକୁ ଅଣା ଯାଉଥିବାର ଦେଖା ଯାଉଥିଲା ।

ଜୀବନଟା ସେମାନଙ୍କର ସମସ୍ତଙ୍କ ପକ୍ଷରେ ଥିଲା ଅତି ଦୁର୍ବିଷହ । କିନ୍ତୁ ସବୁଠାରୁ ବେଶି ଦୁର୍ବିଷହ ଥିଲା ଭେଲଓ ପକ୍ଷରେ । ଏହି ଗ୍ରାମର ସେ ଜଣେ ନୂତନ ବାସିନ୍ଦା । ଅବଶ୍ୟ ଜଣେ ଭ୍ରାମ୍ୟମାଣ ଯାଯାବରକୁ ଯଦି କେହି କେବେ ବାସିନ୍ଦା କହିପାରେ ତେବେ ତାକୁ ବାସିନ୍ଦା ବୋଲି କୁହାଯାଇ ପାରିବ । ଏହି ଧୂଳି ଧୂସରିତ ରାଜପଥ ଦିନେ ତାକୁ ଏଇ ଗାଁରେ ଆଣି ଛାଡ଼ି ଦେଇଗଲା, କାରଣ ତାକୁ ଆଉ ଅନ୍ୟ କେଉଁଠିକି ନେଇ-ଯିବାର ଉପାୟ ନ ଥିଲା । ପଛରେ ସେ ଛାଡ଼ି ଆସିଥିଲା ମୁଠାଏ ଭସ୍ମମାତ୍ର । ତାର ଆତ୍ମାରେ ଆତ୍ମାରେ ଦଗ୍ଧୀଭୂତ ସ୍ମୃତିଗୁଡ଼ାକ ବି ଭସ୍ମରେ ଆଚ୍ଛାଦିତ ହୋଇ ପଡ଼ିଥିଲା । ଏକ କଠୋର ଜୀବନର ସ୍ମୃତି ବ୍ୟତୀତ ଆଉ କ'ଣ ବା ଥିଲା ତା ପକ୍ଷରେ ସ୍ମରଣ କରିବା ପାଇଁ ? ତାର ସମଗ୍ର ସତ୍ତାଟା ଦାଗୀ ଯାଇଥିଲା । ମୁହଁଟା ଥିଲା ତାର ଅତି କୁତ୍ସିତ । ଅଙ୍ଗପ୍ରତ୍ୟଙ୍ଗ ଅତି କ୍ଷୀଣ ଓ ଶୀର୍ଣ୍ଣ । ତାକୁ ଦେଖିଲେ ମନରେ କାହାରି କରୁଣା ହେଉ ନ ଥିଲା କି ସ୍ନେହ ଆସୁ ନ ଥିଲା । କିନ୍ତୁ ତାର ହୃଦୟରେ ଥିଲା ଏକ ଗଭୀର ସ୍ପନ୍ଦନ । ବଡ଼ ଅସ୍ଥିର, ବଡ଼ ଉଦ୍ଦାମ ଥିଲା ଏ ସ୍ପନ୍ଦନ । ଏପରିକି ହେମେ-ନାକୁ ସେ ଯେତେବେଳେ ଦେଖିଲା ସେତେବେଳେ ତାର ହୃଦୟର ଦ୍ରୁତ ସ୍ପନ୍ଦନରେ ଶ୍ୱାସପ୍ରଶ୍ୱାସ ତାର ପ୍ରାୟ ବନ୍ଦ ହୋଇ ଆସିଲା ।

ହେମେନାର ସୌନ୍ଦର୍ଯ୍ୟରେ ଥିଲା ବନପରୀର ରୂପର ସୁଷମା । ସତେ ଯେମିତି ଦୁଇଟି ନୀଳ ନୀଳ ବିନ୍ଦୁ ମେଘମୁକ୍ତ ଆକାଶରୁ ଝରିଆସିଛି, ଆଉ ପ୍ରତ୍ୟେକଟି ବିନ୍ଦୁ ଭିତରେ ଗୋଟିଏ ଗୋଟିଏ ତାରକାର ଟୁକୁରା ଖଚିତ ହୋଇଛି ଆଉ ତାରି ଭିତରେ ଦେଇ ସେ ଦେଖୁଛି ଦୁନିଆକୁ । ଆଦି ଉଷାର ଲଲାଟରେ ଫୁଟିଉଠେ ଗୋଟିଏ ଶିଶିରସ୍ନାତ ପାଟଳ ପୁଷ୍ପ— ଆଉ ସେଇଟି ହେଉଛି ତାର ସ୍ମିତହାସ୍ୟ । ଆଉ ତାର କୁନ୍ତଳ ହେଉଛି ଜାଲ ଜାଲ ଅରୁଣା ମେଞ୍ଚାଏ ସୂର୍ଯ୍ୟର କିରଣ ।

ଗ୍ରାମର ତରୁଣମାନେ ତାକୁ ଦେଖିଲେ ପାଗଳ ହୋଇ ଯାଉ-ଥିଲେ । କିନ୍ତୁ ସେ ଥିଲା ଭାରି ଗର୍ବିତା । ପକ୍ଷ୍ମ ତୋଳି ସେ କାହାଉପରେ ଈଷତ୍ କଟାକ୍ଷପାତ ବି କରୁ ନ ଥିଲା । ଆଉ ଭେଲଓ ? ତା ଉପରେ ତାର ଦୃଷ୍ଟି ବି କେବେ ପଡ଼ିନାହିଁ, ଭୁଲରେ ସୁଦ୍ଧା କେବେ ନାହିଁ ।

କିନ୍ତୁ ବିଶାଳ ମହୀରୁହର ଛାଇ ତଳେ ତଳେ କ୍ଷୀଣ ଦୁର୍ବାଟିଏ ଲୁଚି ରହିଥିଲାଭଳି ଭେଲଓ ତାର ଛାଇ ତଳେ ତଳେ ଛପି ରହିଥାଏ । ତାରି

ପାଖେ ପାଖେ ରହିବା ପାଇଁ ସେ ବରାବର ଚେଷ୍ଟା କରେ । ତରୁଣୀର ହୃଦୟକୁ ସ୍ପର୍ଶ କରିବାଭଳି ସେ ଗୀତ ଗାଇ ଜାଣି ନ ଥିଲା କି ତାକୁ ଘୋଡ଼ା ପିଠିରେ ବସେଇ ନେଇ ପଳାଇ ଯିବାଭଳି ବୀର ପୁରୁଷ ସେ ନ ଥିଲା । ଖାଲି ସେତିକି ନୁହେଁ । ଗାଁର ସମସ୍ତେ ଜାଣିଥିଲେ ଭେଲଓର ମନକୁ କ'ଣ ଗ୍ରାସକରି ରଖିଛି, କିନ୍ତୁ ତାର ମନର ବେଦନା ଦେଖି-ବାକୁ ସମସ୍ତଙ୍କୁ ଭାରି ମଜା ଲାଗୁଥିଲା । ଉତ୍କଟ ବିଦ୍ରୁପର ବାଣରେ ସେମାନେ ତାକୁ ଆଘାତ କରୁଥିଲେ, ଥଟ୍ଟା ତାମସାରେ ସେମାନେ ତାକୁ ବାନ୍ଧି ଦେଉଥିଲେ । ପୀଡ଼ିତ ନିର୍ଯ୍ୟାତିତ ଆତ୍ମା ସେମାନଙ୍କର, ପରାଧୀନ ଦାସର ଆତ୍ମା ସେମାନଙ୍କର, ସୁଖର ସନ୍ଧାନ କେଉଁଠି କରିବାକୁ ହୁଏ ତା ବା ସେମାନେ ଜାଣିବେ କପରି !

ସେହି ବର୍ଷ ଗ୍ରୀଷ୍ମ ଋତୁରେ ବୈଶାଖର ଝାଞ୍ଜି ସଙ୍ଗେ ସଙ୍ଗେ ଆଲ୍ଲୀସାହେବର ଦସ୍ୟୁଦଳ ମଧ୍ୟ ଏହି ସମତଳ ଅଞ୍ଚଳ ଉପରେ ଚଢ଼ାଉ ଆରମ୍ଭ କରିଦେଲେ । ଏହି ଆନାଟୋଲିୟାନ୍ ଦସ୍ୟୁ ସର୍ଦ୍ଦାରର କୁଖ୍ୟାତି ଅତ୍ୟନ୍ତ ଭୟାବହ । ସେ ଯୁଆଡ଼େ ଯାଏ ପଛେ ପଛେ ଛାଡ଼ି ରଖିଦେଇ ଯାଏ ଅଗ୍ନି ଆଉ ରକ୍ତର ସ୍ୱାକ୍ଷର । ଝଡ଼ର ପୂର୍ବାଭାସରେ ପ୍ରାନ୍ତର ଯେମିତି ଧୀର ଶାନ୍ତ ହୋଇଯାଏ, ଏହି ଦସ୍ୟୁ ସର୍ଦ୍ଦାରର ଆଗମନରେ ତୁର୍କୀ ସାମ୍ରାଜ୍ୟର ପଦାନତ ପ୍ରଜାମାନେ ସେମିତି ମୂକ ଶାନ୍ତ ହୋଇଯାନ୍ତି । ସେମାନେ ଜାଣନ୍ତି ଏହି ତୁର୍କୀ ଦସ୍ୟୁ ସର୍ଦ୍ଦାର କାହିଁକି ଆସୁଛି । ସେ ଯେ ସେମାନଙ୍କୁ କେବଳ ଲୁଟତରାଜ କରି ସେମାନଙ୍କର ଘର ଦ୍ୱାର ଜାଳିପୋଡ଼ି ଦେଉଥିଲା ତା ନୁହେଁ, ସେ ଜୀଅନ୍ତା ମଣିଷମାନଙ୍କୁ ମଧ୍ୟ ହରଣଚାଲ କରି ନେଉଥିଲା । ସିମ୍ରଣା ଓ ଆଲେକଜାଣ୍ଡ୍ରିଆର ବଜାର ବିପଣିରେ ସେତେ-ବେଳେ କ୍ରୀତଦାସ ତରୁଣୀ ମାନଙ୍କର ଚାହିଦା ଥିଲା ଖୁବ୍ ବେଶି । ଏହି ଦସ୍ୟୁ ସର୍ଦ୍ଦାରର କବଳରୁ ରକ୍ଷା ପାଇବା ପାଇଁ କେଉଁଠୁ ସାହାଯ୍ୟ ମିଳିବାର କିଛି ଆଶା ନ ଥିଲା କି ଖସି ପଳେଇଯିବା ପାଇଁ କେଉଁଠି ଜାଗା ନ ଥିଲା । ଦୈବୀ ଭରସାଛଡ଼ା ଆଉ କିଛି ଉପାୟ ନ ଥିଲା ! ହେ ଭଗବାନ !

ଚାଷୀକୁଳର ପ୍ରାର୍ଥନା ଭଗବାନ କଣ ସତେ ଶୁଣିଲେ ? ଦସ୍ୟୁ ସର୍ଦ୍ଦାରର ମନରେ ଆଉ କଣ ଥିଲା କେଜାଣି, ଆଲ୍ଲୀ ସାହେବର ଦଳ ସେଥର କେଜାଣି କାହିଁକି ଡେନ୍ୟୁବ ନଦୀ ଆଡ଼କୁ ମୁହାଁଇଗଲେ । ଲୋକେ ଟିକିଏ ଆଶ୍ୱସ୍ତିର ନିଃଶ୍ୱାସ ମାରିଲେ ।

କିନ୍ତୁ ସନ୍ତୁ ପିଟରଙ୍କ ପାର୍ବଣ ଦିବସରେ ହଠାତ୍ କେଉଁଆଡ଼ୁ ଦୁଇଜଣ କେଳା ଆସି ଗାଁ ମଝିରେ ହାଜର ହୋଇଗଲେ । ତାଙ୍କହାତରେ ଆଲିସାହେବ ଖବର ପଠାଇଛି ସେ ତାର ଦଳବଳ ନେଇ କାଲିସକାଳେ ଗାଁରେ ଯାଇ ପହଞ୍ଚିବ । ତାର ହୁକୁମ ହେମେନା ଆସି ତାକୁ ପାଛୋଟି ନେବ । ତାର ରୂପ ସମ୍ଭାରର ସମ୍ବାଦ ତାର କାନରେ ଯାଇ କେମିତି ପହଞ୍ଚି ଯାଇଛି । ପର ପଦାନତ ଦାସର ସୌନ୍ଦର୍ଯ୍ୟରେ ଆନନ୍ଦ ନାହିଁ ।

ଏହି ଦୁଃସମ୍ବାଦ ସମଗ୍ର ଗ୍ରାମକୁ ଏକ ତୋଫାନୀ ଘୂର୍ଣ୍ଣିବାୟୁଭଳି ଆଘାତ କରି ଦେଇଗଲା, ସେମାନଙ୍କର ଆଶାର ଅଙ୍କୁରକୁ ଉତ୍ପାଟିତକରି ଦେଇଗଲା, ସେମାନଙ୍କର ଶାନ୍ତି ଆଉ ସ୍ୱପ୍ନର ଝର୍ଗ ପଦ୍ମକୁ ଓଲେଇ ପୋଲେଇ ପୋଛିପାଛି ନେଇଗଲା । କେବଳ ରହିଗଲା ଗୋଟାଏ ଅସୀମ ହତାଶାର ଆସ୍ତରଣ । ଚାଷୀମାନଙ୍କର ତ୍ରସ୍ତ ଶଙ୍କିତ ଆତ୍ମାକୁ ସେ ଆହୁରି ଆଘାତ କଲା ।

ଏଥର ପୁଣି କ'ଣ ହେବ ? ତା ହୁକୁମ ନ ମାନିଲେ ସେ ଗାଁର ଗୋଟିଏ ହେଲେ ପଥରର ଚିହ୍ନବର୍ତ୍ତି ବି ରହିବ ନାହିଁ । ତା ହେଲେ କ'ଣ ହେମେନାକୁ ବଳି ଦେବାକୁ ପଡ଼ିବ ? କିନ୍ତୁ ତାକୁ ଆଗେଇ ଆଣିବା ପାଇଁ କିଏବା ହାତ ବଢେ଼ଇବାକୁ ରାଜି ହେବ ? ଗ୍ରାମ ଉପରେ ଘନଅନ୍ଧାରମୟୀ ଯାମିନୀର ଯବନିକା ନଇଁ ଆସିଲା । ଚରମ ଆଶଙ୍କାରେ ଲୋକେ ଉଜାଗର ହୋଇ ରହିଲେ ।

ରାତି ପାହି ଆସିଲା । ପ୍ରାଚୀ ଦିଗ୍‌ବଳୟରେ ରକ୍ତବୋଳା ଉଷାର ଆଲୋକ ଯେତେବେଳେ ଉକୁଟି ଉଠିଲା ଦେଖାଗଲା ହେମେନା ପ୍ରଥମ ହୋଇ ବାହାରି ଆସୁଛି ଗାଁ ମୁଣ୍ଡର ଛକ ଉପରକୁ । ଦେହରେ ତାର ସୁନ୍ଦର ପୋଷାକ—ତାରି ବିବାହ ଲାଗି ଯେଉଁ ପୋଷାକ ତିଆରି ହୋଇଥିଲା । ଧୀରେ ଧୀରେ ବିନ୍ୟସ୍ତ ପଦକ୍ଷେପରେ ଗାଁର ଚାଷୀମାନେ ତା ପଛେ ପଛେ ଚାଲିଲେ ।

ହେମେନା କହିଲା, "ଦିଅ, ନିଆଁ ଜାଳ । ଛେଳି, ମେଣ୍ଢାଛୁଆ ଆଣ, ଭଜା ହେବ । ମଦ ଆଣ, ମାଂସ ଆଣ । ଆଲି ସାହେବଙ୍କୁ ମୁଁ ସ୍ୱାଗତ କରିବି !"

କିନ୍ତୁ କେହି ହଲଚଲ ହେଲେ ନାହିଁ ।

"ହଁଅ, ମୁଁ ଯାହା କହୁଛି ତା କର ।" ସେ ପୁଣି ହୁକୁମ ଦେଲା "ଗାଁର ସବୁ ଲୋକ ଉଚ୍ଛନ୍ନ ହୋଇଯିବା ଅପେକ୍ଷା ଜଣେ ଚାଲିଯିବା ଭଲ ।"

ଅତି ନିର୍ମମ, ଅତି ଭୟାବହ ତାର ଏଇ ଆଦେଶ । କିନ୍ତୁ ତାହାହିଁ ସତ୍ୟ । ତା କଥା ସମସ୍ତେ ମାନିନେଲେ ।

ମଥା ଉପରେ ମଧ୍ୟାହ୍ନର ସୂର୍ଯ୍ୟ ଜଳି ଉଠିଲା । ନୀରବ ନିଥର ଆକାଶ । ପତ୍ରଟିଏ ଦୋହଲୁ ନାହିଁ କି ପକ୍ଷୀଟିଏ ଉଡ଼ୁନାହିଁ । ଦଗ୍ଧ ମୃତ୍ତିକା ଉପରେ ପ୍ରଖର ଉତ୍ତପ୍ତ ଅଗ୍ନିର ଆଲୋଡ଼ନ । ଦୂରରୁ ଦେଖାଗଲା ପ୍ରାନ୍ତର ଉପରେ ଧୂଳିର ପଟଳ ।

ସେମାନେ ଆସୁଛନ୍ତି··· !

ହେମେନା ଉନ୍ନତ ଲଲାଟ ତୋଳି ଋଜୁ ହୋଇ ଠିଆ ହେଲା । ଗୋଟି ଗୋଟି ହୋଇ ମଥାନତ କରି ଲୋକେ ତାକୁ ବିଦାୟ ଦେଲେ ।

"ଭାଇ, ଭଉଣୀମାନେ, ମୁଁ ଚାଲିଲି । ବିଦାୟ ଦିଅ ମତେ !"

ଜମାଟବନ୍ଧା ବରଫ ପରି କଠୋର ହୋଇ ଯାଇଛି ଗ୍ରାମବାସୀମାନଙ୍କର ହୃଦୟ । ଛେଳି ଓ ମେଣ୍ଢା ପୋଡ଼ା ହେଉଥିବା ଅଗ୍ନିଶିଖା ଭିତରୁ ଗୋଟାଏ ତିକ୍ତ ଉତ୍କଟ ଗନ୍ଧ ଉଠି ଆସୁଛି । ଧାର ଧାର ହୋଇ ଅଜସ୍ର ଅଶ୍ରୁର ସ୍ରୋତ ସେମାନଙ୍କର କପୋଳ ଉପରେ ଦେଇ ବୋହିଗଲା । ବାଷ୍ପରୁଦ୍ଧ ହୋଇ ଆସିଲା ସେମାନଙ୍କର କଣ୍ଠ ।

"ବିଦାୟ ହେମେନା ।"

ହଠାତ୍ ଏଇ ଜନଗହଳି ଭିତରୁ ତେଭଲଓ କେଉଁଠୁ ଆଗେଇ ଆସିଲା । ମୁହଁଟା ତାର ଆହୁରି କୁଞ୍ଚିତ ହୋଇ ଯାଇଛି । ଆଖିଦୁଇଟା ପ୍ରଜ୍ୱଳିତ ହୋଇ ଉଠୁଛି । ଉନ୍ମତ୍ତ ଆବେଗରେ ସେ କହି ଉଠିଲା, "କଣ କରୁଛ ତମେ ଭାଇମାନେ ? ଜୀଅନ୍ତା ମଣିଷଟାକୁ କବର ଦେଇ ଦେଉଛ ?"

ଭୟତ୍ରସ୍ତ ତରୁଣୀମାନେ ଗଳା ଫଟେଇ ଚିତ୍କାର କରି ଉଠିଲେ । ବୁଢାବୁଢ଼ୀମାନେ ଗୁମୁରି ଗୁମୁରି କାନ୍ଦିବାକୁ ଲାଗିଲେ । ପୁରୁଷମାନେ ଆଖି ନତ କରି ମୁହଁ ପୋତି ରହିଲେ ।

"ଆଉ କ'ଣ କରବାର ଅଛି ? ଆଉ କଛି ଉପାୟ ନାହିଁ ।"

ଗୋଟି ଗୋଟି କର ସମସ୍ତଙ୍କ ମୁହଁ ଉପରେ ଆଖି ବୁଲେଇ ଆଣିଲା ଭେଲଓ । ତାପରେ ଆହତ ବ୍ୟକ୍ତି କଣ୍ଠରେ ଚିତ୍କାର କର ଉଠିଲା—"ମୁଁ ନିଜେ ଦସ୍ୟୁ ସର୍ଦ୍ଦାରକୁ ସ୍ୱାଗତ କରିବ !"

ସିଏ କ'ଣ କରୁଛି କେହି ଉପଲବ୍ଧି କରିବା ପୂର୍ବରୁ କି ତାକୁ କେହି ବାଧାଦେବା ପୂର୍ବରୁ ସେ ଦେହର ଜାମାଟାକୁ ଝୁକୁରା ଝୁକୁରା କରି ଛିଣ୍ଡେଇ ଦେଇ ଦେହରୁ ବାହାର କରି ଆଣିଲା ଆଉ ନିଆଁ ଗଦାରୁ ଜଳନ୍ତା କାଠଖଣ୍ଡେ ଟାଣିନେଇ ତାର ଛାତି ଆଉ କାନ୍ଧଦଟାକୁ ଚେଙ୍ଗି ଜାଳି ଫୋଟକା କରିଦେଲା । ସଙ୍ଗେ ସଙ୍ଗେ ଛାତିର ଚମଡ଼ା ଫାଟିଯାଇ ନାଲି ନାଲି ଫୋଟକା ସବୁ ହୋଇଗଲା । ତଥାପି ତା ତୁଣ୍ଡରୁ ଉଁ ଚୁଁ ବୋଲି ଶବ୍ଦଟିଏ ବାହାରିଲା ନାହିଁ ।

ହାତରେ ଖଣ୍ଡେ ଲଠି ଧରି ସେ ଦଉଡ଼ିଲା ସେହି ପ୍ରାନ୍ତର ଆଡ଼କୁ ।

ଆଲ୍ଲି ସାହେବର ଲୋକେ ଯେତେବେଳେ ଦେଖିଲେ ସେ ଗାଁର ଜଣେ ଲୋକ ସେମାନଙ୍କୁ ପାଛୋଟି ନେବାକୁ ଆସୁଛି ସେମାନେ ଅଟକିଗଲେ । ଆଲ୍ଲି ସାହେବ ଘୋଡ଼ାରେ ଚଢ଼ି ଆଗକୁ ଆସିଲା । ତାର ପୋଷାକର ଧାରେ ଧାରେ ସୁନା ଓ ରୂପାର ଝାଲର ଝଲମଲ କରୁଛି । ତାରି ଲଦନ ତଳେ ଧୀରେ ଧୀରେ ପାଦ ଉଠାଇ ନାଚବାରେ ଲାଗିଛି ଘୋଡ଼ାଟା । ପାଦତଳର ମାଟି ତାର ଚୋଡ଼ ପୋଡ଼ ଯାଉଛି ।

ଭେଲଓ ତାର ଆଗରେ ଠିଆ ହୋଇଗଲା । ମାଟି ଉପରେ ମୁଣ୍ଡ ନୁଆଁଇ ପ୍ରଣାମ କରି କହିଲା, "ସ୍ୱାଗତ କରୁଛି ଆପଣଙ୍କୁ, ଆସନ୍ତୁ ଆଲ୍ଲି ସାହେବ !"

ଦସ୍ୟୁ ସର୍ଦ୍ଦାରର ମୁହଁଟା ଅଦ୍ଭୁତ ବୀଭତ୍ସ, ଆହୁରି ବିକଟ ହୋଇ ଉଠିଲା । ଗର୍ଜ୍ଜନ କରିଉଠିଲା ଆଲ୍ଲି ସାହେବ, "ତୁମ୍ କୋନ୍ ହୈ କୁତ୍ତା ?"

"ଆପଣଙ୍କୁ ପାଛୋଟି ନେବାପାଇଁ ମତେ ପଠାଯାଇଛି, ସର୍ଦ୍ଦାର ! ଗାଁରେ ଗୋଟାଏ ଖତରଣ ରୋଗ ଦେଖା ଦେଇଛି । ସମସ୍ତଙ୍କ ଅବସ୍ଥା ସାଂଘାତିକ । ମୋ ଅବସ୍ଥା ଯାହା ଟିକିଏ ଭଲ ଅଛି ।"

ଏତକ କହି ଭେଲଓ ତାର ଜାମାଟାକୁ ଟେକିଦେଇ ଦେଇ ତାର ପିଠି ଆଉ କାନ୍ଧର ଲାଲ ଲାଲ ରକ୍ତବୋଳା ଫୋଟକା ଗୁଡ଼ାକୁ ଦେଖାଇ ଦେଲା ।

"ତୁ ମିଛ କହୁଛୁ ।" ଛେପ ନେଣ୍ଡାଏ ପକେଇ ଦେଇ ଗର୍ଜିଉଠିଲା ଆଲ୍ମି ସାହେବ; ଏଇ ଦୁଃସାହସୀ କାଫେର୍‌ଟାକୁ ଦଣ୍ଡ ଚଖେଇ ଦେବାପାଇଁ ଘୋଡ଼ାଟାକୁ ଆଗେଇ ନେଇ ଆସିଲା ।

ଘୋଡ଼ାର କାରୁକାର୍ଯ୍ୟ ଖଚିତ ଲଗାମଟାକୁ ଧରିନେଇ କହିଲା ଭେଲଓ, "ନାଇଁ ସର୍ଦ୍ଦାର, ମୁଁ ମିଛ କହୁନାହିଁ, ସର୍ଦ୍ଦାର ! ଆପଣ ଆସନ୍ତୁ ଦେଖିବେ । ଗାଁ ଲୋକେ ସାହାଯ୍ୟ ପାଇଁ ଅନେଇ ବସିଛନ୍ତି । ଘର ଘର ହୋଇ ଏହି ରୋଗ ବ୍ୟାପି ଗଲାଣି ।" କହି କହି ଘୋଡ଼ାକୁ ଆସ୍ତେ ଆସ୍ତେ ଗାଁ ଆଡ଼କୁ ଆଗେଇ ନେବାକୁ ସେ ଚେଷ୍ଟାକଲା ।

"ଲଗାମ୍ ଛୋଡ଼୍ ଦୋ ତୁମ୍ କୁତ୍ତା !" ସୂର୍ଯ୍ୟାଲୋକରେ ଝଲମଲ କରି ଉଠିଲା ଆଲ୍ମି ସାହେବର ଉଦ୍ୟତ ତରବାରି ।

"ଆସନ୍ତୁ, ସର୍ଦ୍ଦାର, ଦେଖିବେ ଆସନ୍ତୁ । ଲୋକେ ସାହାଯ୍ୟ ପାଇଁ ଚାହିଁ ବସିଛନ୍ତି ।" ଭେଲଓର ପୁଣି ସେଇ ଅନୁନୟ ।

ନିଜର ତରବାରୀକୁ କଳୁଷିତ କରିବା ଇଚ୍ଛାନୁହେଁ ଆଲ୍ମି ସାହେବର । ଅଣ୍ଟାର କମରବନ୍ଧରୁ ରୂପାର ଗୋଟିଏ ପିସ୍ତଲ ସେ ବାହାର କରି ଆଣିଲା । ସୁନ୍ଦନ୍ତ ପ୍ରାନ୍ତର ଉପରେ ଗର୍ଜି ଉଠିଲା ପିସ୍ତଲ ଗୁଳିର ଏକ ଶାଣିତ ଆବାଜ । ତାପରେ ଘୋଡ଼ାର ମୁହଁଟାକୁ ଫେରାଇ ଆଣିଲା ଆଲ୍ମି ସାହେବ । ଚାବୁକ୍ ଦେଇ ଛୁଟାଇ ଦେଲା ତାକୁ ପ୍ରାନ୍ତରର ବୁକୁ ଉପରେ ତୀର ବେଗରେ । ତା ପଛେ ପଛେ ତା ଦଳର ଲୋକମାନେ ବି କ୍ଷୀପ୍ରଗତିରେ ଫେରି ଚାଲିଲେ । ଅଳ୍ପ କେତୋଟି ମୁହୂର୍ତ୍ତ ପରେ ଧୂଳି ପଟଳର ଅନ୍ତରାଳରେ କୁଆଡ଼େ ହଜିଗଲେ ସେମାନେ ।

ଭୂଲୁଣ୍ଠିତ ଭେଲଓ ରାସ୍ତା ଉପରେ ସେଇଠି ସେମିତି ପଡ଼ିରହିଲା । ଦେହର ଦୁଇପାଖେ ଦୁଇଟି ବାହୁ ତାର ବିସ୍ତାରିତ ହୋଇ ପଡ଼ିଛି । ଦୂର ଆକାଶର ନିଃସୀମ ନୀଳିମା ଭିତରେ ହଜିଯାଇଛି ନିଥର ଆଖିର ନିଷ୍ପ୍ରଭ ଦୃଷ୍ଟି । କ୍ଷତ ସ୍ଥାନର ରକ୍ତ ସ୍ରୋତ ପଲକେ ପଲକେ କୁଆଡ଼େ ଭିଜିଗଲା ମାଟିରେ । ବୀରର ରକ୍ତଲାଗି ତୃଷିତ ମେଦିନୀ ବହୁକାଳ ଧରି ପ୍ରତୀକ୍ଷା କରି ରହିଥିଲା ।

—*—

# ଜହ୍ନ ଉପରେ ଘୋଡ଼ା ନାଚେ

ଲୁଇଗି ପିରାନ୍ଦେଲୋ

[ ଲୁଇଗି ପିରାନ୍ଦେଲୋ—ଆଧୁନିକ ଇଟାଲୀୟ ସାହିତ୍ୟର ଅନ୍ୟତମ ସ୍ରଷ୍ଟା । ଜନ୍ମ—୧୮୬୭ ଖ୍ରୀଷ୍ଟାବ୍ଦ ଜୁନ୍ ୨୮ ତାରିଖରେ, ସିସିଲିର କାଓସ୍ ଗ୍ରାମରେ । ମୃତ୍ୟୁ—୧୯୩୬ଖ୍ରୀଷ୍ଟାବ୍ଦ ଡିସେମ୍ବର ୧୦ତାରିଖରେ, ରୋମ୍‌ରେ । ଗରିବର ସନ୍ତାନ ଓ ଗରିବର କବି ସେ । ଧୂସର, ନୀରସ, ମଗ୍ନଚିତ୍ତ ମଣିଷର ଅବ୍ୟକ୍ତ ଆକୁତି-ତାଙ୍କର ସାହିତ୍ୟ ସୃଷ୍ଟିର ପ୍ରଧାନ ଅବଲମ୍ବନ । ତଥାପି ତାଙ୍କ ପାଇଁ "ଜୀବନର ସମସ୍ତ ଗ୍ଲାନି, ସମସ୍ତ ନିର୍ଯ୍ୟାତନା ସତ୍ତ୍ୱେ ଜୀବନ ସୁନ୍ଦର ।" ଏହି ରୁଦ୍ରସୁନ୍ଦର ଜୀବନର ଛାୟାପାତ ହୋଇଛି ତାଙ୍କର ବହୁ ଗଳ୍ପ, ଉପନ୍ୟାସ, କବିତା ଓ ନାଟକରେ । ଆଧୁନିକ ଇଟାଲୀୟ ନାଟ୍ୟକଳାର ସେ ହେଉଛନ୍ତି ଅନ୍ୟତମ ସ୍ରଷ୍ଟା । ୧୯୩୪ ଖ୍ରୀଷ୍ଟାବ୍ଦରେ ସେ ନୋବେଲ ପୁରସ୍କାର ଦ୍ୱାରା ସମ୍ମାନିତ ହୋଇଥିଲେ । ତାଙ୍କର କେତୋଟି ବିଖ୍ୟାତ ଗ୍ରନ୍ଥ ହେଉଛି—"Six characters in search of an author"; "As you desire me";(ନାଟକ),"The Outcast", "The Old and the Young" (ଉପନ୍ୟାସ) Mal Gioconbo (କବିତା) ଏବଂ ଅସଂଖ୍ୟ କ୍ଷୁଦ୍ର ଗଳ୍ପ । ]

ଧରା ପ୍ରାଣରେ ଆଶ୍ୱିନର ସ୍ପର୍ଶ ଆସି ଲାଗିଲାଣି । ତଥାପି ଆଫ୍ରିକାନ୍ ସାଗର ଉପରେ ସେଇ ସେଉଁ ଉଚ୍ଚାବଚ ଶୁଷ୍କମାଟିର ପ୍ରାନ୍ତରଟା ଅତି ବିପଜ୍ଜନକ ଭାବେ ଝୁଲି ପଡ଼ିଛି ତାରି ଉପରେ ଏପର୍ଯ୍ୟନ୍ତ ବି କ୍ଲାନ୍ତ ବିଷର୍ଣ୍ଣ ଗ୍ରାମାଞ୍ଚଳଟା ଝାଉଁଳି ପଡ଼ି ରହିଛି ନିର୍ମମ ନିଦାଘ ସୂର୍ଯ୍ୟର ତାପରେ ଦଗ୍ଧ ତୃଷାର୍ତ୍ତ ହୋଇ । ଏପର୍ଯ୍ୟନ୍ତ ବି ଏହି ପ୍ରାନ୍ତରର ବୁକୁଟା କଳା କଳା ଥୁଣ୍ଟା ଥୁଣ୍ଟା ଗଛର ଆସ୍ତରଣରେ ଆଚ୍ଛାଦିତ ହୋଇ ରହିଛି । ଏଣେ ତେଣେ ବିକ୍ଷିପ୍ତ କେତୋଟି ବାଦାମ ଗଛ ଆଉ ବା କେଉଁଠି ଠାଏ ଠାଏ ଗୋଟାଏ ଦିଟା ବୁଢ଼ା ବୁଢ଼ା ଓଲିଭ୍ ଗଛର ଗଣ୍ଡି ଆଖିରେ ପଡ଼େ । ତଥାପି ଏଇଠି ଏଇ ନୀରସ ପ୍ରାନ୍ତରରେ ନବବିବାହିତ ଦମ୍ପତି ତାଙ୍କର ମଧୁମାସର ପ୍ରଥମ କେତୋଟି ଦିନ ଅନ୍ତତଃ ଅତିବାହିତ କରିବେ ବୋଲି ସ୍ଥିର ହୋଇଛି ।

ସେହି ଦ୍ୱୀପର ପ୍ରାଚୀନ ପ୍ରାସାଦର ଗୋଟିଏ କକ୍ଷରେ ବିବାହ ଉତ୍ସବ ଚାଲିଛି । କିନ୍ତୁ କହିବାକୁ ଗଲେ ସେଟି ଉତ୍ସବ ନୁହଁ । ଅନ୍ତତଃ ଆମନ୍ତ୍ରିତ ଅତିଥିମାନଙ୍କୁ ଏହା ଏକ ଉତ୍ସବ ପରି ମନେ ହେଉ ନାହିଁ । କୋଡ଼ିଏ ବର୍ଷ ହେବ କି ନାହିଁ ଏଇ ମାଂସଳ ତରୁଣଟିକୁ ! ତାର ସେଇ ରକ୍ତାଭ ମୁଖ ମଣ୍ଡଳର ସେଇ ଶାଣିତ କୃଷ୍ଣାଭ ଚକ୍ଷୁଯୁଗଳ ଉନ୍ମାଦ ମଣିଷର ଆଖିପରି ଅତି ଅସ୍ୱାଭାବିକ ଭାବେ ଉଜ୍ଜ୍ୱଳ ହୋଇ ଉଠିଛି । ଏହି ତରୁଣଟିର ଭାବଭଙ୍ଗୀ ଦେଖି ଆମନ୍ତ୍ରିତ ଅତିଥିମାନଙ୍କ ମନରେ ଯେଉଁ ଅପ୍ରସ୍ତୁତତା, ଯେଉଁ ହତାଶା ଜାତ ହୋଇଥିଲା ତାହାକୁ ସେମାନେ କେହି ହେଲେ ମଧ୍ୟ ଅତିକ୍ରମ କରିବାକୁ ସମର୍ଥ ହୋଇ ପାରି ନାହାନ୍ତି । ଏହି ତରୁଣଟିର କାନରେ ତାର ଚତୁର୍ଦ୍ଦିଗର କୌଣସି କୋଳାହଳ ପ୍ରବେଶ କରି ପାରୁ ନାହିଁ । ସେ ଖାଉ ନାହିଁ କି ପିଉ ନାହିଁ । କେବଳ ବେଳକୁ ବେଳ ସେ ଆହୁରି ଲାଲ ହୋଇ ଉଠୁଛି । ତାର ମୁଖମଣ୍ଡଳ ଆହୁରି ଆରକ୍ତ ହୋଇ ଉଠୁଛି ।

ପ୍ରତ୍ୟେକ ବ୍ୟକ୍ତି ଜାଣନ୍ତି ଯେ, ତା ପାଖରେ ବସିଥିବା ସେଇ ତରୁଣୀର ପ୍ରେମରେ ସେ ପାଗଳ ହୋଇ ଯାଇଛି । ତାକୁଇ ପାଇବା ପାଇଁ ବହୁତ ଉନ୍ମାଦ କାମ ସେ କରିଛି, ଏପରିକି ଆତ୍ମହତ୍ୟାର ଉଦ୍ୟମ ମଧ୍ୟ ସେ କରିଛି । ସମସ୍ତେ ଜାଣନ୍ତି ସେ ଭାରିଧନୀ । ବର୍ତ୍ତୀପୀ ବଂଶର ସମସ୍ତ ସମ୍ପତ୍ତିର ଏକମାତ୍ର ଉତ୍ତରାଧିକାରୀ ସେ । ଆଉ ଏଇ ତରୁଣୀ ଜଣେ ଗରିବ ସାମରିକ କର୍ମଚାରୀର କନ୍ୟାମାତ୍ର । ସେମାନେ ଏଇ ବର୍ଷେ ହେଲା ସିସିଲିରୁ ଆସି ଏଇଠି ଅଛନ୍ତି । ଏସବୁ ସତ୍ତ୍ୱେ ଏହି ସାମରିକ କର୍ମଚାରୀ ଜଣକ, ଯାହାକୁ କି ଏହି ଦ୍ୱୀପର ଅଧିବାସୀମାନଙ୍କ ସମ୍ପର୍କରେ ସତର୍କ କରାଇ ଦିଆଯାଇଥିଲା, ସେ ଏହି ବିବାହ ପ୍ରସ୍ତାବରେ ସମ୍ମତି ଦେବା ପାଇଁ ବଡ଼ କୁଣ୍ଠିତ ଥିଲା । କାରଣ ଏହି ବନ୍ୟ ବର୍ବର ମଣିଷମାନଙ୍କ ଭିତରେ ସେ ତାର କନ୍ୟାରତ୍ନକୁ ସମର୍ପି ଦେବା ପାଇଁ ଚାହୁଁ ନ ଥିଲା ।

ବରର ହାବଭାବ ଦେଖି ଯେଉଁ ଅତିଥିମାନେ ହତାଶ ହୋଇ ପଡ଼ିଥିଲେ ସେମାନେ ଯେତେବେଳେ ଏହି କିଶୋରୀ କନ୍ୟାକୁ ବର ସହିତ ତୁଳନା କରି ଦେଖିଲେ ସେମାନଙ୍କର ହତାଶା ଆହୁରି ବଢ଼ିଗଲା । ପ୍ରକୃତରେ ଦେଖିବାକୁ ଗଲେ କନ୍ୟା ଏକ ବାଳିକାମାତ୍ର । ଶୁଭ୍ର, ସ୍ନିଗ୍ଧ, ସତେଜ, ଅପୂର୍ବ ଏକ ପ୍ରାଣାବେଗରେ ଜୀବନ୍ତ ଆଉ ଟିକିଏ ଉଦାସୀନ ଓ ବିବାଗୀ । ତାକୁ ଦେଖିଲେ ମନେ ହୁଏ ସତେ ଯେମିତି ତା ମନରେ

କୌଣସି ଅପ୍ରୀତିକର ଭାବନା ଦେଖା ଦେଲେ ସେ ତାକୁ ସଙ୍ଗେ ସଙ୍ଗେ ତାର ସେଇ ଅପୂର୍ବ ସଜୀବତା ଦେଇ ଦୂର କରିଦିଏ, ମନକୁ ପୋଛିଦିଏ । ତାର ଏହି ସଜୀବତା ଯେତିକି ଲୋଭନୀୟ, ଯେତିକି ମନମୁଗ୍ଧକାରୀ ସେତିକି ସରଳ, ଶିଶୁ ସୁଲଭ ଓ ନିଷ୍କପଟ ମଧ୍ୟ । ଜଗତ ଓ ଜୀବନ ସମ୍ପର୍କରେ ଏ ପର୍ଯ୍ୟନ୍ତ କିଛି ଜାଣି ନ ଥିବା ଗୋଟିଏ ଚଗଲା ଝିଅର ଫାଜିଲାମୀ ପରି ତାର ଏହି ଶିଶୁ ସୁଲଭ ଆଚରଣ । ମାଆ ଛେଉଣ୍ଡ ପିଲାଟିଏ । ମାଆର ସ୍ନେହ ଆଦରରୁ ବଞ୍ଚିତ ହୋଇ ସେ ବଢ଼ି ଆସିଛି । ତାକୁ ଦେଖିଲେ ସ୍ପଷ୍ଟ ବୁଝାଯାଏ ସେ ବିନା ପ୍ରସ୍ତୁତିରେ ବିବାହିତ ଜୀବନ ପଥରେ ପାଦ ଦେଇଛି । ସମସ୍ତେ ମୁରୁକି ମୁରୁକି ହସୁଥିଲେ । କିନ୍ତୁ ହଠାତ୍ ସମସ୍ତେ ଶିହରି ଉଠିଲେ ଯେମିତି ସେ ଭୋଜନ ଶେଷରେ ବର ଆଡ଼କୁ ଅନେଇ ଅନେଇ କହି ଉଠିଲା—

"ଆରେ, ଇଏ କ'ଣ ନିନୋ, ଆଖି ଦିଟା କାହିଁକି ସେମିତି ମିଟିମିଟି କରୁଛ ? ଦେଖି ଦେଖି କ'ଣ ହେଲା ତମର, ଆଖି ପୋଡ଼ୁଛି ? ଆରେ, ତମ ହାତ ଦିଟା ତ ଭାରି ଟାଣିଛି କାହିଁକି । ବାପା ! ଦେଖିଲ, ଦେଖିଲ ୟାଙ୍କ ହାତ ଦିଟା । ୟାଙ୍କୁ କ'ଣ ଆଉ ଜର ହେଲା କି ?"

କର୍ଣ୍ଣେଲ ବିଗ୍ରିଭ ଭାରି ବ୍ୟସ୍ତବ୍ୟସ୍ତ ହୋଇ ଗାଁର ଅତିଥିମାନଙ୍କୁ କିପରି ଶୀଘ୍ର ବିଦା କରିବେ ସେଥିପାଇଁ ଭାରି ତତ୍ପର ହୋଇ ଉଠିଲେ । ତାଙ୍କ ମତରେ ଏଇଟା ଗୋଟାଏ ବଡ଼ ଅଶୋଭନୀୟ ଦୃଶ୍ୟ, ଏହାକୁ ଶୀଘ୍ର ବନ୍ଦ କରିଦେବା ଦରକାର । ଅଧ ଘଣ୍ଟାକେ ଘୋଡ଼ା ଗାଡ଼ିରେ ସମସ୍ତେ ଯାଇ ଠେଲା ଠେଲି ହୋଇ ପଶିଲେ । କର୍ଣ୍ଣେଲ ବସିଥିବା ଗାଡ଼ିଟି ଧୀରେ ଧୀରେ ଚାଲିଲା ଏବଂ ଟିକିଏ ପଛେଇ ପଛେଇ ରହିଲା । କାରଣ ବର କନ୍ୟା ଦିହେଁ ଜଣେ ଏପାଖେ ଜଣେ ସେପାଖେ ବାପ ମା'ଙ୍କର ହାତ ଧରି କିଛିବାଟ ସେଇ ଦୂର ସହର ଆଡ଼କୁ ଲମ୍ବି ଯାଇଥିବା ରାଜପଥ ପର୍ଯ୍ୟନ୍ତ ଚାଲି ଚାଲି ଯିବାକୁ ଇଚ୍ଛାକଲେ । ବଡ଼ ରାଜପଥ ପାଖରେ ଆସି ପହଞ୍ଚିଲା କ୍ଷଣି କର୍ଣ୍ଣେଲ ଟିକିଏ ନଇଁପଡ଼ି ଝିଅର କପାଳରେ ଚୁମାଟିଏ ଦେଲେ । ତା ପରେ ଟିକିଏ ଗଳା ସଫା କରି ନେଇ ଭୃକୁଟୁରି ଭୃକୁଟୁରି ହୋଇ କହିଲେ, "ହଉ ବାବୁ ନିନୋ, ଆମେ ଏଇଠୁ ବିଦାୟ ନେଉଛୁ ।"

ବରର ମାଆ ମଧ୍ୟ ହସି ହସି କହିଲେ, "ହଉ, ମା' ଇଡ଼ା, ଆମେ ଏଥର ଚାଲିଲୁ ।" ତାପରେ ଘୋଡ଼ାଗାଡ଼ିଟା ଘଡ଼ର ଘଡ଼ର ହୋଇ ଜୋରରେ ଆଗେଇଗଲା ଅନ୍ୟ ସବୁ ଗାଡ଼ିକୁ ଟପି ଚାଲିଯିବା ପାଇଁ ।

ହଡ୍ଢେ ନିର୍ନିମେଷ ନୟନରେ ସେହି ଆଡ଼କୁ ଚାହିଁ ସେଠାରେ କେତୋଟି ମୁହୂର୍ତ୍ତ ପାଇଁ ଠିଆ ହୋଇ ରହିଲେ । କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ କେବଳ ଇଡ଼ାହିଁ ସେହି ଆଡ଼କୁ ଚାହିଁରହି ଥିଲି । କାରଣ ନିନୋ ସେତେବେଳକୁ ଆଉ କିଛି ଦେଖିପାରୁ ନ ଥିଲି, ବାହାର ଦୁନିଆ ସମ୍ପର୍କରେ ସେ ଆଉ ସଚେତନ ନ ଥିଲି, ଠିଆ ହୋଇ ରହିଥିବା ଇଡ଼ା ଉପରେ ହିଁ ଦୁଇଟି ଯାକ ଆଖିର ଦୃଷ୍ଟି ତାର ନିବଦ୍ଧ ହୋଇ ରହିଥିଲି । ଅବଶେଷରେ ଏତେ ସମୟ ପରେ ଯାଇ ଏଇ ନିରୋଳା ମୁହୂର୍ତ୍ତ ଆସିଛି—ଇଡ଼ା ତାରି ପାଖରେ ଏକଲା···ସେ ଆଉ ଇଡ଼ା···ତାରି ଇଡ଼ା, ଗୋଟାପଣ ତାରି । କିନ୍ତୁ ଏ କଣ ? ଇଡ଼ା କାନ୍ଦୁଛି କାହିଁକି ?

"ବାପା···" କହି ଉଠିଲି ଇଡ଼ା, ବଦାମ୍ୟ ସମ୍ବର୍ଦ୍ଧନାରେ ରୁମାଲଟା ହଲଉ ହଲଉ । "ଦେଖିଲ ! ହସୁଛି ସେଇଠି ? ସିଏ ମଧ୍ୟ···"

"ନାଇଁ, ଇଡ଼ା, ଇଡ଼ା ମୋର ! ପ୍ରାଣର ଇଡ଼ା ମୋର", ଥରିଲି ଥରିଲି ବାଷ୍ପରୁଦ୍ଧ କଣ୍ଠରେ କହି କହି ନିନୋ ତାକୁ ଛାତି ଉପରକୁ ଆଉଜେଇ ଆଣିବାକୁ ଚେଷ୍ଟା କଲି ।

"ନାଇଁ, ଆଉ, ଛାଡ଼ିଦିଅ ମତେ !"

"ମୁଁ ତମ ଆଖିଟା ଟିକିଏ ପୋଛି ଦେବାକୁ ଚାହୁଁଥିଲି··· ।"

"ଥାଉ, ମୋ ସୁନାଟା ପରା, ମୁଁ ନିଜେ ପୋଛି ଦେବନି !"

ନିନୋ ବଡ଼ ଅପ୍ରସ୍ତୁତ ହୋଇ ସେଇଠି ଠିଆ ହୋଇ ରହିଲି । ଇଡ଼ା ଆଡ଼କୁ ସେ ଯେମିତି ଚାହିଁ ରହିଛି ଦେଖିଲେ ମନେହୁଏ ବଡ଼ ଦାରୁଣ, ବଡ଼ ଦୟନୀୟ ତାର ଅବସ୍ଥା ।

ଆଖିରୁ ଲୁହ ପୋଛି ସାରି ପଚାରିଲି ଇଡ଼ା, "କିନ୍ତୁ କଣ ହେଲି ତମର ? ତମ ସାରା ଦେହ ଥରି ଉଠୁଛି ଯେ ! ନାଇଁ ନିନୋ, ନାଇଁ, ନାଇଁ, ମୋ ରାଣ ତମକୁ, ତମେ ସେଇଠି ଏମିତି ଠିଆ ହୋଇ ରହନା ! ତମକୁ ଦେଖିଲେ ହସମାଡ଼ୁଛି ମତେ । ଆଉ ତମେ ଜାଣିଛ ତ ମୁଁ ଥରେ ହସିବାକୁ ଆରମ୍ଭ କଲେ ଆଉ ବନ୍ଦ କରି ପାରିବି ନାହିଁ । ରହ ଟିକିଏ ରହ, ମୁଁ ତମକୁ ଟିକିଏ ବେଡ଼ା କରିଦିଏ !"

ନିନୋର କାନମୁଣ୍ଡାରେ ହାତଟିକୁ ଥୋଇ ସେ ତା ଆଖିକୁ ଫୁଙ୍କିବାକୁ ଲାଗିଲି । ଏହି ସୁକୋମଳ ଅଙ୍ଗୁଳିର ସ୍ପର୍ଶରେ, ଏହି ଅଧରର

ମୃଦୁ ନିଃଶ୍ୱାସରେ ନିନୋର ମନେହେଲା ତାର ପାଦତଳୁ ମାଟି ଯେମିତି ଧୀରେ ଧୀରେ ଅପସରି ଯାଉଛି, ଗୋଡ଼ ତାର ଭାଙ୍ଗି ଭାଙ୍ଗି ପଡୁଛି । ସେ ତଳେ ଆଣ୍ଠୁ ମାଡ଼ି ବସିପଡ଼ିଲା ବେଳକୁ ଇଡ଼ା ତାକୁ ଧରିନେଲା । ହସି ହସି ଫାଟି ପଡ଼ିଲା ଇଡ଼ା । କହିଲା, "ଏଇଠି ? ଏଇ ରାସ୍ତାରେ ? ପାଗଳ ନାଁ କ'ଣ ତମେ ? ଆସ, ଯିବା ଆସ ଆମେ । ଦେଖିଲ, ଦେଖିଲ ସେଇ ପାହାଡ଼ ଉପରକୁ । ସେଇଠିକି ଗଲେ ଏ ପର୍ଯ୍ୟନ୍ତ ବି ଗାଡ଼ଟା ଦେଖାଯିବ। ଆସ, ଯିବା ସେଇଠିକି ଦେଖିବା ।"

ନିନୋର ହାତଟାକୁ ଧରି ଜୋରରେ ସେ ତାକୁ ଟାଣି ଟାଣି ନେଇଗଲା ।

ଏହି ପଲ୍ଲୀ ପ୍ରାନ୍ତରର ଚତୁର୍ଦ୍ଦିଗରେ ଯେଉଁଠି ମହାକାଳ ତାର ଦୁଇ ହାତର ଅଞ୍ଜଳରେ କେତେ କ'ଣ ବୁଣିଦେଇ ଯାଇଛି, କେତେ ଘାସ, କେତେ ଗୁଳ୍ମ, କେତେ ବୁଦା, ସେ ସବୁ ଆଜି ନିର୍ମମ ସୂର୍ଯ୍ୟ ତାପରେ ଝାଉଁଳି ଝରି ଯାଇଛି । ତାରି ଭିତରୁ ବାୟୁର ଉପର ଆସ୍ତରଣକୁ ଉଠି ଆସୁଛି ଗୋଟାଏଁ କେମିତି ନିଦଗ୍ଧ ନିବୃଜ ଆଦିମ ଉତ୍ତାପ, ଗୋଟାଏ ଉଦଗ୍ର ପିପାସା । ତା ସାଙ୍ଗରେ ମିଶି ରହିଛି ପତିତ ଜମିରେ ପଡ଼ି ରହିଥିବା ପଚ୍ଚ ସଢ଼ା ଖତଗଦାର ଉଗ୍ର ଗନ୍ଧ । ଏହି ଆଦିମ ଉତ୍ତାପ, ଏହି ଉଦଗ୍ର ପିପାସା, ଏହି ଉତ୍କଟଗନ୍ଧ ଏସବୁ ସମ୍ପର୍କରେ କେବଳ ନିନୋହିଁ ସଚେତନ । କିନ୍ତୁ ଇଡ଼ାକୁ ସେ ସବୁ ସ୍ପର୍ଶ କରି ପାରିନାହିଁ । ଇଡ଼ା ଦୌଡ଼ି ଦୌଡ଼ି ମନ ଖୁସିରେ ଆଗେଇ ଚାଲିଛି । ତାରି ଆଡ଼କୁ ଭାସି ଆସୁଛି ଦୂର ବଣଜଙ୍ଗଲର ବନ୍ୟ ଭରତିଆ ପକ୍ଷୀର ସୁର୍ଯ୍ୟ ସଙ୍ଗୀତ । ଆଉ ବା କେଉଁ ଦୂର ଖଳାବାଡ଼ିରୁ ଡାକୁଛି କୁକୁଡ଼ା—କେଉଁଦୂର ଅନାଗତ ଭବିଷ୍ୟତର ଆକାଶୀ ଆହ୍ୱାନ ଭଳି ତାର ସମସ୍ତ ସତ୍ତାକୁ ଆଚ୍ଛନ୍ନ କରି ଦେଉଛି ଏହି କୋମଳ ପ୍ରକୃତିର ସୁଶୀତଳ ସ୍ପର୍ଶ, ମୃଦୁ ସମୀରଣ, ଆଉ ପାର୍ଶ୍ୱବର୍ତ୍ତୀ ସାଗରର ସୁରଭି, ଯାହାର ସ୍ପର୍ଶରେ ବିକ୍ଷିପ୍ତ ବାଦାମ ଗଛର ମୁଠା ମୁଠା କ୍ଲାନ୍ତ ପୀତାଭ ପତ୍ରଗୁଡ଼ାକ ଆଉ ପାଉଁଶିଆ ଧାରୁଆ ଧାରୁଆ ଓଲିଭ ଗଛର ପତ୍ର ଗୁଡ଼ାକ ଧୀରେ ଧୀରେ ଆନ୍ଦୋଳିତ ହୋଇ ଉଠୁଛି ।

ପାହାଡ଼ ଚୂଡ଼ାରେ ଯାଇ ପହଞ୍ଚିବାକୁ ବେଶି ସମୟ ଲାଗିଲା ନାହିଁ ସେମାନଙ୍କୁ । ନିନୋ ଦୌଡ଼ି ଦୌଡ଼ି ଏତେ କ୍ଲାନ୍ତ ହୋଇ ପଡ଼ିଥିଲା ଯେ ସେ ଆଉ ଠିଆ ହୋଇ ପାରିଲା ନାହିଁ । ସେ ଚେଷ୍ଟା କଲା ବସି ପଡ଼ିବାକୁ ଆଉ

ଇଡ଼ାର କଟିତଟରେ ନିଜର ହାତକୁ ଛନ୍ଦ ଦେଇ ତାକୁ ତା'ର ପାଖରେ ସେଇ ମାଟି ଉପରେ ମଧ୍ୟ ବସେଇ ଦେବାକୁ ଚେଷ୍ଟା କଲା । କିନ୍ତୁ ଇଡ଼ା ତାକୁ ବାଧା ଦେଇ କହିଲା, "ରହ, ରହ, ମୁଁ ଆଗ ଟିକଏ ଦେଖିସାରେ"

ଇଡ଼ା ଭିତରେ ଭିତରେ ବଡ଼ ଅସ୍ୱସ୍ତି, ବଡ଼ ଅସ୍ଥିର ବୋଧ କଲାଣି । କିନ୍ତୁ ସେ ତାହା ପ୍ରକାଶ କରିବାକୁ ଚାହେଁନା । ନିନୋର ଏହି ଅଦ୍ଭୁତ ଆଶ୍ଚର୍ଯ୍ୟ ଜିଦ୍‌ଖୋର ଭାବ ଦେଖି ସେ ମନେ ମନେ ବିରକ୍ତ ହୋଇ ଉଠିଲାଣି । ସେ ଆଉ ଚୁପଚାପ ହୋଇ ରହିଯିବାକୁ ଚାହେନା । ସେ ଚାହେ ଉଡ଼ି ଚାଲିଯିବାକୁ, ଦୂରକୁ, ଆହୁରି ଦୂରକୁ । ସେ ଚାହେ ଝାଙ୍କି ଝୁଙ୍କି ତାକୁ ଦୋହଲାଇ ଚେତାଇ ଦେବାକୁ, ତା'ର ମନ ଅନ୍ୟଆଡ଼େ ଭୁଲେଇ ନେବାକୁ ଆଉ ନିଜ ମନଟାକୁ ବି ଅନ୍ୟଆଡ଼େ ଭୁଲେଇ ନେବାକୁ ଅନ୍ତତଃପକ୍ଷେ ଦିନର ଏହି ଆଲୁଅଟା ରହିଥିବା ପର୍ଯ୍ୟନ୍ତ ।

ଆଖିତଳେ ପାହାଡ଼ର ଆରପଟେ ବିସ୍ତୃତ ହୋଇ ଲମ୍ବିଯାଇଛି ଧ୍ୱସ୍ତ ବିଧ୍ୱସ୍ତ ମାଟିର ପ୍ରାନ୍ତର । ଚାରିଆଡ଼େ କଟା ଧାନଗଛର ଖୁଣ୍ଟା ଗୁଡ଼ାକ, ଆଉ କିଛି ନାହିଁ, ଖାଲି ଖୁଣ୍ଟା ଖୁଣ୍ଟା ଗଛର ସମୁଦ୍ର । ଆଉ ତା'ର ଭିତରେ ମଝିରେ ମଝିରେ କେତୋଟି ବିକ୍ଷିପ୍ତ ଆରଣ୍ୟକ ତରୁର କୃଷ୍ଣାଭ ସର୍ପିଳ ସ୍ରୋତ ଫୁଟି ଉଠୁଛି, ଭାଙ୍ଗିଦେଇ ଯାଉଛି ଖୁଣ୍ଟା ଖୁଣ୍ଟା ଧାନ ଗଛର ସ୍ଥୂଳ ପୀତାଭ-ଧୂସରିମାର ସୀମାହୀନ ବ୍ୟାପ୍ତିକୁ । ତା'ର ଆରପଟେ ଆଉ ଟିକଏ ଦୂରକୁ ଆଖି ବଢ଼େଇ ଦେଲେ ଦିଶିଯାଏ ସତେ ଯେମିତି ଏକ ପୀତାଭ ସାଗରର ଅପର ଉପକୂଳରେ ଗୋଟିଏ କ୍ଷୁଦ୍ର ପଲ୍ଲୀର ମଥାନ ମୁଣ୍ଡଟେକି ଉଠିଛି କଳା ମଚ୍ ମଚ୍ ଲମ୍ବା ଲମ୍ବା ପପଲର ଗଛର ଅରଣ୍ୟ ଭିତରୁ ।

ଇଡ଼ା ତା'ର ସ୍ୱାମୀକୁ କହିଲା, "ଚାଲ ଯିବା ସେଇ ଗାଁ ଭିତରକୁ । କେତେ ବା ସମୟ ଲାଗିବ ? ଖୁବ୍ ବେଶି ହେଲେ ଘଣ୍ଟାଏ । ଏଇନେ ତ ପାଞ୍ଚଟାରୁ ବେଶି ହେବ ନାହିଁ । ଘରେତ ଏଇନେ ଚାକରମାନେ ଘରଦ୍ୱାର ଆହୁରି ସଫାସୁତୁରା କରି ନଥିବେ । ସଞ୍ଜବେଳକୁ ଘରକୁ ଫେରିଗଲେ ଚଳିବ ସେ !"

ନିନୋ ଟିକଏ ଆପତ୍ତି କରିବାକୁ ଚେଷ୍ଟା କଲା କିନ୍ତୁ ଇଡ଼ା ତାକୁ ଟାଣି ଓଟାରି ଠିଆ କରାଇ ଦେଲା । ତା ପର ମୁହୂର୍ତ୍ତରେ ଦେଖାଗଲା ଇଡ଼ା ଛୁଟି ଯାଇଛି ସେଇ ଖୁଣ୍ଟା ଖୁଣ୍ଟା ଗଛର ସାଗର ଭିତର ଦେଇ ତରୁଣୀ

ହରିଣୀ ପରି କ୍ଷିପ୍ର, ଉଦ୍ଦାମ ଗତିରେ । ନାନୋ କିନ୍ତୁ ପଡ଼ିଯାଇଛି ପଛରେ । ତାର ମୁହଁଟା ବେଳକୁ ବେଳ ଆହୁରି ନାଲି ହୋଇ ଉଠୁଛି । ଅଣନିଃଶ୍ୱାସୀ ହୋଇ, ଝାଳ ନାଳ ହୋଇ ସେ ଦୌଡ଼ୁଛି । ଅବଶେଷରେ ଅଧୋପୃ ହୋଇ ସେ ଡାକ ପକାଇଲା ଇଡ଼ାକୁ, "ଟିକିଏ ରହିଥା, ଇଡ଼ା ! ତୋ ହାତଟା ଟିକିଏ ଦେ ଅନ୍ତତଃ, ମୁଁ ଧରି ଧରି ଯିବି ଚାଲେ !"

ହଠାତ୍ ଗୋଟାଏ ଚିତ୍କାରକରି ଚମକି ଠିଆ ହୋଇ ପଡ଼ିଲା ଇଡ଼ା । ପରେ କାଉ କା' କା' ରାବକରି ସଙ୍ଗେ ସଙ୍ଗେ ତା ସାମନାରେ ମାଟି ଉପରୁ ଉଠିଗଲେ । ମାଟିରେ ଦେଖାଗଲା ଗୋଟାଏ ମଲାଘୋଡ଼ା ଚିତ୍ହୋଇ ପଡ଼ିଛି । ମରି ଯାଇଛି ? ନାଁ, ନାଁ, ମରିନାହିଁ ବୋଧହୁଏ । ହେଇଟି ଘୋଡ଼ାର ଆଖି ହଟା ତ ଖୋଲା ରହିଛି । ହେ ଭଗବାନ, କି ଆଖି ଇଏ ? ପ୍ରେତ କି ଆଖି ? ପ୍ରେତ ଘୋଡ଼ା ନୁହଁ, ଗୋଟାଏ କଙ୍କାଳ । ହେଇଟି ତାର ପଞ୍ଜରା ଗୁଡ଼ାକ ? ହେଇଟି ତା ଫାଡ଼ଆଣ୍ଟା ।

ନାନୋ ଆସି ଧଇଁସଇଁ ହୋଇ ପହଞ୍ଚିଲା । "ଆସ, ଆସ, ଆମେ ଯିବା, ଫେରିଯିବା ଆସ ।"

"ଦେଖ, ସେଇଟା ବଞ୍ଚିଛି କେମିତି !" ପାଟି କରି ଉଠିଲା ଇଡ଼ା । ଅସୀମ କରୁଣାରେ ଶିହରି ଉଠିଲା ଦେହଟା ତାର । "ତା ମୁଣ୍ଡଟା ଟିକିଏ ଦେଖିଲୁ ! ହେ, ଭଗବାନ, କି ଆଖି ଦେଇଛ ତମେ ତାକୁ । ଦେଖିଲୁ ନାନୋ ।"

"ହଁ, ହଁ," ନାନୋ ଆହୁରି ଅଣନିଃଶ୍ୱାସୀ ହୋଇ କହିଲା । "ଘୋଡ଼ାଟାକୁ ସେମାନେ ଆଣି ଏଇ ସାଙ୍ଗେ ସାଙ୍ଗେ ପକେଇ ଦେଇ ଯାଇଛନ୍ତି ! ସେ ଥାଉ, ଆସ ଆମେ ଯିବା । କି ଦୁର୍ଗନ୍ଧ ! ଜଣା ପଡ଼ୁନାହିଁ ତମକୁ······?"

ଇଡ଼ା ପାଟିକରି ଉଠିଲା, ତାର ସର୍ବାଙ୍ଗ ଥରି ଉଠୁଥାଏ, "ଆଉ ଏଇ କାଉଗୁଡ଼ାକ, ସେମାନେ କଣ ଘୋଡ଼ାଟାକୁ ଜୀଅନ୍ତା ଖାଇ ଦେବେ ?"

"ଓଃ, ଇଡ଼ା, ସିଏ ଥାଉ । ତମେ ଦୟା କରି ଆସିଲ ।" ନାନୋ କଣ୍ଠରେ ଆକୁଳ ଅନୁନୟ ।

"ଚୁପ୍ କର, ନନୋ !" ବିରକ୍ତ ହୋଇ ଉଠିଲା ଇଡ଼ା ତା ସ୍ୱାମୀର ଏଇ ନିର୍ବୋଧତା ଆଉ ଗ୍ଳାନି ଦେଖି । "ମୋ କଥାର ଉତ୍ତର ଆଗ ଦେଲ— ଘୋଡ଼ାଟାକୁ ଯଦି ସେମାନେ ଜୀଅନ୍ତା ଖାଇଦେବେ ? କଣ ହେବ ?"

"ସେମାନେ ତାକୁ ଜୀଅନ୍ତା ଖାଇବେ କି ନାହିଁ ମୁଁ ଜାଣିଲି କେମିତି ? ସେମାନେ ହୁଏ ତ ଅପେକ୍ଷା କରି ପାରନ୍ତି—।"

"ଭୋକ ଆଉ ଶୋଷରେ ପଡ଼ି ପଡ଼ି ଘୋଡ଼ାଟା ଏଇଠି ମରିଗଲା ପର୍ଯ୍ୟନ୍ତ ଅପେକ୍ଷା କରିବେ ସେଇ କାଉ ପଲ ?" ଅସୀମ କାରୁଣ୍ୟ ଆଉ ଅସହ୍ୟ ଘୃଣାସରେ ସଙ୍କୁଚିତ ହୋଇଗଲା ଇଡ଼ାର ମୁହଁଟା । "କାହିଁକି ସେମାନେ ଫୋପାଡ଼ି ଦେଇଗଲେ ଘୋଡ଼ାଟାକୁ ଏଇଠି ? ଘୋଡ଼ାଟା ବୁଢ଼ା ହୋଇଗଲା ବୋଲି ? ଆଉ କିଛି କାମକରି ପାରିବ ନାହିଁ ବୋଲି ? ଆହା ବିଚରା ! କି ନିର୍ମମ, କି ହୃଦୟହୀନ ଏଇ କୃଷୀଗୁଡ଼ାକ । ତମେ ବା ସେଇଠି ସେମିତି ଠିଆ ହୋଇ ରହିଛ କେମିତି ? ତମର ହୃଦୟ ବୋଲି କଣ କିଛି ନାହିଁ ?"

ହଠାତ୍ ରାଗିଗଲା ନନୋ, କଣ୍ଠରେ ଶ୍ଳେଷଭରି କହିଲା, "ମାଫ୍ କରିବ—ଗୋଟାଏ ପଶୁ ପ୍ରତି ତମର ଏତେ ଦରଦ ଯେ···"

"କାହିଁକି, ଅନ୍ୟାୟ କ'ଣ ହେଲା ?"

"କିନ୍ତୁ ମୋ ପାଇଁ ତମର ଏତେ କମ୍ ଦରଦ କାହିଁକି ?" ସେଇଠି ବସି ବସି ଭୋକ ଆଉ ଶୋଷରେ ମରି ଯାଇଛ ? ତମେ ଖାଲି···ଉଃ, ଦେଖିଲ, ଦେଖିଲ ସେଇ କାଉଗୁଡ଼ାକୁ, ଦେଖ ନନୋ କେମିତି ତା ଉପରେ ଚକକ୍ରର ଖାଉଛନ୍ତି ସେମାନେ । ଉଃ, କି ଭୟାବହ, କି ନିର୍ଲଜ୍ଜ, କି ବିଦାରକ ଏ ଦୃଶ୍ୟ । ଆସ ନନୋ, ଆସିଲ ତାକୁ ଟିକିଏ ଉଠେଇଲ, ହୁଏତ ସେଇଟା ଚାଲିପାରେ ।"

ଅସହିଷ୍ଣୁ ହୋଇ ଚିତ୍କାର କରି ଉଠିଲା ନନୋ, "କଣ କହୁଛ ତମେ ମତେ କରିବାକୁ ? ତାକୁ ଘୋଷାଡ଼ି ଘୋଷାଡ଼ି ଗାଁରେ ନେଇ ଛାଡ଼ି ଦେଇ ଆସିବି ? କାନ୍ଧରେ ବୁହାଇ ବୁହାଇ ନେବି ? କଣ କହୁଛ ତମେ ? ଦିଶୁନି ଘୋଡ଼ାଟା ଦେହରୁ ପ୍ରାଣ ଛାଡ଼ି ଆସିଲାଣି ?"

"ତା ପାଇଁ ସବୁ କଛୁ ଖାଇବାକୁ ଆଣିଦେଇ ପାରନ୍ତେ ଆମେ ।"

"ଆଉ ପିଇବା ପାଇଁ ମଧ୍ୟ କଛୁ !"

"ଓଃ, ମନୋ, କ ନିର୍ମମ ତମେ ।" ଲୁହରେ ଛଳ ଛଳ ହୋଇ ଆସିଲା ଇରାର ଆଖିଦ'ଟା ।

ନିଜ ଦେହର କମ୍ପମାକୁ ଆସ୍ତୃତକର ଇରା ଘୋଡ଼ାମୁଣ୍ଡ ଉପରେ ଝୁଙ୍କିପଡ଼ ଧୀରେ ଧୀରେ ଆଉଁଷିବାକୁ ଲାଗିଲା ତାର ମୁଣ୍ଡଟାକୁ । କ୍ରମେ କ୍ରମେ ଜନ୍ତୁଟା ବହୁ ଆପ୍ୟାସରେ ଆଣ୍ଠୁ ଉପରେ ଭରଦେଇ ଉଠିଲା । ତାର ଏହି ଶେଷ ମୂହୂର୍ତ୍ତର, ଏହି ଶୋଚମୀୟ ଦୟମୀୟ ଅବସ୍ଥାର ମର୍ମନ୍ତୁଦ ଯନ୍ତ୍ରଣା ସତ୍ତ୍ୱେ ତାର ଲଲାଟରେ, ତାର ଗଳାରେ ସ୍ପଷ୍ଟ ଫୁଟି ଉଠିଛି ଏକ ମହାନ୍, ଉଦାର ସୌନ୍ଦର୍ଯ୍ୟର ସତ୍ତ୍ୱା ।

ମନୋ ହଠାତ୍ କାହିଁକ ବେଦମ ହୋଇ ପଡ଼ିଲା, ମନେ ହେଲା ତାର ଶ୍ୱାସପ୍ରଶ୍ୱାସ ଯେମିତ ବନ୍ଦ ହୋଇ ଆସୁଛି । ତାର ଶିରରେ ଶିରରେ ଉତ୍ତପ୍ତ ରକ୍ତର ଯେଉଁ ଢେଉ ପରେ ଢେଉ ଆସି ପିଟି ହୋଇଯାଉଛି ହୁଏତ ସେଇଥି ପାଇଁ, ହୁଏତ ଇରାର ଏହି ତକ୍ତ ଓ ଘୃଣାପୂର୍ଣ୍ଣ ମନୋଭାବ ଦେଖି, କମ୍ବା ହୁଏତ ଶ୍ରାନ୍ତରେ ଦେହ ସାରା ଝାଳନାଳ ହୋଇ ତାର ହଠାତ୍ ଏମିତ ହୋଇଗଲା ତାହା କହିହେବ ନାହିଁ । ମୁଣ୍ଡଟା ତାର ଘୁରିଲେଇ ହୋଇଯାଉଛି, ମୁଣ୍ଡଟା ଟେକ ନେଇ ଗଲାପରି ଲାଗୁଛି । ଦାନ୍ତ ଗୁଡ଼ାକ ଠକ୍ ଠକ୍ ହୋଇ ଥରବାକୁ ଆରମ୍ଭ କଲାଣି । ତାର ମନେ ହେଲା ତାର ଦେହ ଭିତର ଦେଇ ଯେମିତ ଏକ ଅଶରୀରୀ ଶିହରଣର ସ୍ରୋତ ଛୁଟିଯାଉଛି । ସେ ସଙ୍ଗେ ସଙ୍ଗେ କେଉଁ ଏକ ଆଦମ ପ୍ରବୃତ୍ତିର ତାଡ଼ନାରେ ତାର କୋଟ୍‌ର କଲରଟାକୁ ଟେକ ଦେଲା । ପ୍ୟାଣ୍ଟ ପକେଟ ଭିତରେ ହାତଦିଟାକୁ ପୂରେଇ ଦେଇ ଆଗେଇ ଗଲା କଛି ଦୂରକୁ । ତାପରେ ସେଇଠି ଗୋଟାଏ ପଥର ଉପରେ ଜାକ ଜୁକ ହୋଇ ବସିପଡ଼ି ସେ ନିଜକୁ ହଜେଇ ଦେଲା ଚରମ ହତାଶାର ଅନ୍ଧକାର ଭିତରେ ।

ସୂର୍ଯ୍ୟ ଅସ୍ତ ହୋଇ ଆସିଲାଣି । ଦୂର ରାଜପଥ ଉପରୁ ମଝିରେ ମଝିରେ ଭାସି ଭାସି ଆସୁଛି ଗତଶୀଳ ଘୋଡ଼ାର ବେକର ଘଣ୍ଟିଘାଗୁଡ଼ି ଶବ୍ଦ ।

ମନୋର କପାଳ ଏକ ଆଗ୍ନେୟ ଉତ୍ତାପରେ ଜଳି ଉଠୁଛି । ଶିରାରେ ଶିରାରେ ତାର ଶୋଣିତର ସୁତୀବ୍ର ଦଂଶନ । କାନମୁଣ୍ଡା ଝାଇଁ ଝାଇଁ ହୋଇଯାଉଛି । ତାର ମନେ ହେଲା ତାକୁ ଯେମିତି ଶୁଣାଯାଉଛି ବହୁଦୂରର ବହୁ ଘଣ୍ଟି ଘାଗୁଡ଼ିର ଶବ୍ଦ । ତାର ସେଇ ବ୍ୟଗ୍ର ବ୍ୟାକୁଳତା, ଆଶା ଓ କାମନାର ସେହି ଆବେଗ ଆକୁଳ ଶିହରଣ, ଇଡ଼ାର ଉଦାସୀନତା ଓ ଖିଆଲ, ଆଉ ଶେଷରେ ପାହାଡ଼ ଉପରେ ସେଇ ଦୌଡ଼ା··· ଆଉ ତାପରେ ସେଇ ଘୋଡ଼ାଟା···ସେଇ ଅଭିଶପ୍ତ ଘୋଡ଼ାଟା ! ହେ ଭଗବାନ, ଏଟା କ'ଣ ସ୍ୱପ୍ନ ନା । ଆଉ କିଛି ? ସ୍ୱପ୍ନ ଭିତରେ କି ଭୟାବହ ଦୁଃସ୍ୱପ୍ନ ଏଟା ? ତାକୁ କଣ ଜ୍ୱର ହୋଇଛି ? ନାଁ, ଆଉ କିଛି ସାଂଘାତିକ ବ୍ୟାଧି ? ଆଉ କି ଅନ୍ଧକାର ଏଟା ! ଭଗବାନ, କି ଛଟି କଟି ଅନ୍ଧକାର ! ଆଉ ଏଟା କ'ଣ, ଆଖିର ଦୃଷ୍ଟି ଯେ ତାର ଆଚ୍ଛନ୍ନ ହୋଇ ଆସୁଛି ! ତୁଣ୍ଡରୁ କଥା ଫୁଟୁ ନାହିଁ । ସେ ପାଟିକରି ପାରୁନାହିଁ । ସେ ଡାକିବାକୁ ଚେଷ୍ଟା କଲା "ଇଡ଼ା, ଇଡ଼ା," ବୋଲି କିନ୍ତୁ ତାର ଶୁଖିଲା ଗଳାଭିତରୁ କୌଣସି ଶବ୍ଦ ଫୁଟିଲା ନାହିଁ ।

ଇଡ଼ା କାହିଁ ? କ'ଣ କରୁଛି ସିଏ ? ଇଡ଼ା ଚାଲିଯାଇଛି ପାଖର ସେଇ ଗାଁଟାକୁ ଘୋଡ଼ାଟା ସକାଶେ କିଛି ଖାଦ୍ୟ ଆଣିବା ପାଇଁ । ବୋକୀ ଏତକ ବୁଝିପାରିଲା ନାହିଁ ଯେ, ଗାଁର ଚାଷୀମାନେ ଘୋଡ଼ାଟାକୁ ଆଣି ଏଇଠି ମରିବା ପାଇଁ ଛାଡ଼ିଦେଇ ଯାଇଛନ୍ତି ।

ମନୋ ସେଇଠି ସେମିତି ବସିରହିଲା, ଏକାକୀ ସେଇ ପଥର ଉପରେ । ବେଳକୁ ବେଳ ବଢ଼ି ଚାଲିଲା ତାର ଦେହର ସେଇ ଅଦ୍ଭୁତ କମ୍ପନ । ଯେମିତି ବସି ବସି ଗୋଟାଏ ବିରାଟ ପେଣ୍ଡୁଭଳି ଯାଳଯୁକ୍ତ ହୋଇ ସେ ଦେଖିଲା—ହଁ ବର୍ତ୍ତମାନ ତ ଅତି ସ୍ପଷ୍ଟଭାବେ ସେ ତାକୁ ଦେଖିପାରୁଛି—ଗୋଟାଏ ଅତି ଭୟାବହ ବୀଭତ୍ସ ଦୃଶ୍ୟ, ଏଇ ଦୁନିଆର ନୁହଁ, ଆଉ ଏକ ଦୂରଦୂରାନ୍ତ କେଉଁ ଗ୍ରହର ସେ ଦୃଶ୍ୟ ଯେମିତି । ଗୋଟାଏ ଜହ୍ନ । ଗୋଟାଏ ବିରାଟ ଜହ୍ନ ଧୀରେ ଧୀରେ ଉଠିଆସୁଛି ସେଇ ଅନ୍ଧାଗହ୍ୱରର ଅଗର ଆର-ପାରିରୁ । ଆଉ ଏଇ ବିଶାଳ, ବାଷ୍ପାଚ୍ଛନ୍ନ, ତାମ୍ରାଭ ମଣ୍ଡଳର ପୃଷ୍ଠଭୂମି ଉପରେ ଗାଢ଼କଳା ହୋଇ ଉଠି ଆସୁଛି ସେଇ ଅଶ୍ୱର ଉଦ୍ଧିତ ଲଲାଟ, ତାର ଗଳାକୁ ବିସ୍ତାରିତ କରିଦେଇ ସେ ଯେମିତି ପ୍ରତୀକ୍ଷାକରି ରହିଛି ଅନନ୍ତ କାଳକୁ—ଦୃଢ଼ ଏଡ ତାର ସେଇ ଉଦ୍ଧିତ ଲଲାଟଟା ଏମିତି ଯୁଗ ଯୁଗ

ଧରି ଚିରକାଳ ପ୍ରତୀକ୍ଷାକରି ଆସିଛୁ ସେଇ ତାମ୍ରାଭ ମଣ୍ଡଳାକୃତି ଜହ୍ନର ବୁକୁଉପରେ ଗୋଟାଏ କଳାଗୁଳି ରୂପରେ ଖୋଦିତ ହୋଇ ! ଆଉ ଉପରେ, ଆକାଶରେ ଘୂର୍ଣ୍ଣାୟମାନ କାକପଲର ସେଇ କୁତ୍ସିତ ଚିତ୍କାର !

ଆଉ ଇଡ଼ା ଯେତେବେଳେ ଫେରି ଆସିଲା ହତବୁଦ୍ଧି ଓ ନିସ୍ତେଜ ହୋଇ, ପ୍ରାନ୍ତର ଭିତରେ ପଥ ଖୋଜି ଖୋଜି, "ନିନୋ, ନିନୋ" ଡାକି ଡାକି ସେତେବେଳକୁ ଜହ୍ନ ଆହୁରି ଉପରକୁ ଉଠି ଆସିଲାଣି । ଘୋଡ଼ାଟା ତଳକୁ ଲେଟି ପଡ଼ିଲାଣି ମୁର୍ଦ୍ଦାରପରି । ଆଉ ନିନୋ ? ନିନୋ କାହିଁ ? ଆରେ ହୋଇଛି, ନିନୋ ସେଇଠି ! ସିଏତ ମଧ୍ୟ ସେଇ ମାଟି ଉପରେ ତଳପଡ଼ିଛି !

ନିନୋ କଣ, ଶୋଇ ପଡ଼ିଛି ସେଇଠି ?

ଇଡ଼ା ଦୌଡ଼ିଗଲା ତାରି ପାଖକୁ । ଦେଖିଲା ବେଳକୁ ନିନୋର ଗଳା ଘଡ଼ ଘଡ଼ ହେଉଛି ମରଣ ଯନ୍ତ୍ରଣାରେ । ମୁହଁଟା ମଧ୍ୟ ମାଟି ଚୁମି-ଯାଉଛି, ପ୍ରାୟ କାଳାକାଠ ପାଲଟି ଆସିଲାଣି । ଆଖି ଦିଟା ବୁଜି ବୁଜି ହୋଇଯାଉଛି, ଫୁଲଲା ଫୁଲଲା ହୋଇ ଲାଲ୍ ଟକ୍ ଟକ୍ ଦେଖାଯାଉଛି ।

ହେ, ଭଗବାନ୍ ! ମୂର୍ଚ୍ଛାହିତ ହେଲାଭଳି ଇଡ଼ା ଚାରିଆଡ଼େ ଆଖି ବୁଲାଇ ଆଣିଲା । ଗାଁରୁ ଘୋଡ଼ା ପାଇଁ ଆଣିଥିବା ମୁଠାଏ ଗୁଡ଼ ହାତଭିତରୁ ତାରି ଝରିପଡ଼ିଲା ତଳକୁ । ଇଡ଼ା ଚାହିଁଲା ଜହ୍ନ ଆଡ଼େ, ତାପରେ ଘୋଡ଼ା ଆଡ଼େ, ତାପରେ ମାଟିଉପରେ ମୁର୍ଦ୍ଦାରପରି ପଡ଼ିଥିବା ସେଇ ମଣିଷଟା ଆଡ଼େ । ତାକୁ ଲାଗିଲା ସେ ଯାହାସବୁ ଦେଖୁଛି ସବୁକିଛି ମିଛ, ସବୁକିଛି ଅବାସ୍ତବ । ଏଇ ସନ୍ଦେହ ତା ମନରେ ଯେତିକି ଯେତିକି ଘନୀଭୂତ ହୋଇ ଉଠିଲା ତାରି ସଂଜ୍ଞା ସେତିକି ସେତିକି ଲୋପ ପାଇଗଲାପରି ମନେ ହେଲା । ହଠାତ୍ ଏକ ଭୟାବହ ଆତଙ୍କରେ ସଂତ୍ରସ୍ତ ହୋଇ ସେ ଦୌଡ଼ିଲା, ଘରମୁହାଁ ସେ ଦୌଡ଼ିଲା, ପ୍ରାଣପଣେ ଚିତ୍କାର କରି କରି ଦୌଡ଼ିଲା, "ବାପା, ବାପା, ନେଇଯା ମତେ ଏଇଠୁ ବାପା !" ହେ ଭଗବାନ୍ ! ନେଇଯା, ନେଇଯା ଏଇଠୁ, ଏଇ ମଣିଷଙ୍କ ପାଖରୁ, ଯାହା ଗଳାରେ ଘଡ଼ ଘଡ଼ ଶବ୍ଦ, ମରଣର ଯନ୍ତ୍ରଣା, ଯାହାର ଅର୍ଥ ଏ ପର୍ଯ୍ୟନ୍ତ ସେ ଆଦୌ ବୁଝିପାରୁ ନାହିଁ···ନେଇଯା, ନେଇଯା ଏଇଠୁ, ଏଇ ପାଗଳ ଜହ୍ନଟା ପାଖରୁ, ଏଇ ଉନ୍ମତ୍ତ ଆକାଶତଳୁ, ଏଇ କୁତ୍ସିତ କାକପଲର ବୀଭତ୍ସ ଚିତ୍କାରତଳୁ, ନେଇଯା ଦୂରକୁ, ଆହୁରି ଦୂରକୁ, ଆହୁରି ଦୂରକୁ, ଦୂରକୁ··· !



# ଅରଣ୍ୟରେ ଅପରାହ୍ନ

ଆଲ୍‌ବର୍ଟ ମାଲ୍‌ଜ

[ ଆଲ୍‌ବର୍ଟ ମାଲ୍‌ଜ—ଜନ୍ମ ୧୯୦୮ । ଆମେରିକା ଯୁକ୍ତରାଷ୍ଟ୍ରର ଆଧୁନିକ ଓ ପ୍ରଗତିଶୀଳ ଲେଖକ । ନିର୍ଯ୍ୟାତିତ ମଣିଷର ବେଦନାସ୍ମୃତ ଆଉ ବହ୍ନିମାନ ପ୍ରାଣର ଶିଳ୍ପୀ ସେ । ସେଥିପାଇଁ ଶାସକଗୋଷ୍ଠୀର ରକ୍ତଚକ୍ଷୁର ଶୀକାର ହେବାକୁ ପଡ଼ିଛି ତାଙ୍କୁ ଅନେକବାର । ବହୁ ନାଟକ, ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପର ମାଧ୍ୟମରେ ଅବହେଳିତ ମଣିଷର ଦୁଃଖ, ସୁଖ, ଆଶା, ନିରାଶାର ବାଣୀକୁ ସେ ରୂପ ଦେଇଛନ୍ତି । ତାଙ୍କର ଏହି ଗଳ୍ପଟିରେ ଆମେରିକା ଯୁକ୍ତରାଷ୍ଟ୍ରର ଆର୍ଥିକ ସଙ୍କଟମୟ ଯୁଗର ଏକ ମର୍ମସ୍ପର୍ଶୀ ଦୃଶ୍ୟ ନିହିତ । ]

ତେରବର୍ଷ ବୟସର କିଶୋର ଚାର୍ଲସ ଫେଲନ୍ । ହାତ ପାପୁଲିରେ ହାତ ବୋମ ଟିଏ ଦଳେଇ ଦଳେଇ ଅପେକ୍ଷା କରି ରହିଛି ଟ୍ରାଫିକ୍ ଆଲୁଅର ସଙ୍କେତଟା ବଦଳିଯିବା ପାଇଁ । ଅଷ୍ଟମ ଆଭେନ୍ୟୁର ବସ୍‌ଟା ଯେମିତି ଆଗେଇବାକୁ ଆରମ୍ଭ କଲା ସଙ୍ଗେ ସଙ୍ଗେ ସେ ଛପିଗଲା ପାଖରେ ଥିବା ବରଫ ସ୍ତୁପର ପଛପଟେ । ବସ୍‌ଠାରୁ ମାତ୍ର କୋଡ଼ିଏ ଗଜ ଦୂରରେ ସେ ଠିଆ ହୋଇଛି । ହାତରେ ତାର ସେଇ ମାରାତ୍ମକ କ୍ଷେପଣାସ୍ତ୍ରଟି ଶୂନ୍ୟରେ ଉତ୍ତୋଳିତ ହୋଇ ରହିଛି, ଉଦ୍ୟତ ହୋଇ ରହିଛି । ଠିକ୍ ସେଇ ମୁହୂର୍ତ୍ତରେ ଆଖିର ଗୋଟାଏ ପଲକ ଭିତରେ ବସ୍‌ର ମଥାଉପରେ ବୋମାଟି ଯାଇ ଫୁଟିଗଲା । ଚାର୍ଲସ୍‌ର ଓଠରେ ଖେଳିଗଲା ଅସୀମ ତୃପ୍ତିର ଏକ ସ୍ମିତହାସ୍ୟ । ସେ ପୁଣି ମେଞ୍ଚାଏ ବରଫ ତାଡ଼ି ଆଣିଲା ତତ୍ପ । ହାତରେ ପୁଣି ତାକୁ ଗୋଲ୍ ଗୋଲ୍ କରି ଗଢ଼ିଲା ହାତବୋମାଟିଏ । ଏଇ ତାର ବରଫର ହାତବୋମା, କିଶୋର ଚାର୍ଲିର ।

ଧୀରେ ଧୀରେ ସମସ୍ତଙ୍କୁ ପାଦରେ ଦଳି ଦଳି ସେ ଆଗେଇ ଗଲା ହାଡ୍‌ସନ୍ ଷ୍ଟ୍ରୀଟ୍ ଆଡ଼େ । ତମ୍ବାତାର ପରି ଲକ୍‌ଲକ୍ କମନୀୟ ସୁଦୃଢ଼ ଶରୀର ତାର । ଦେଖିବାକୁ ବେଶି ଉଚ୍ଚ ନୁହଁ । ମୁହଁଟା ଟିକଏ କେମିତି ଖୁବ୍ ବେଶି ଗୋରାଭଳି ଦେଖାଯାଏ । ସରୁ ସରୁ ଓଠ ଦୁଇଟି ଚପିହୋଇ ରହିଛି । ଗ୍ଲେନ୍ ଚାଲିଛି ସ୍ୱପ୍ନାତୁର, ମନ୍ଥର ପଦକ୍ଷେପରେ । ହଠାତ୍ ପେରି ଷ୍ଟ୍ରୀଟର ମୋଡ଼ ପାଖରେ ସେ ପାଇଲା ଗୋଟାଏ ବଡ଼ ଲଫାପା । ସେଥିରେ ଅଛି ୧୦ଲକ୍ଷ ୨ଶହ ୩୪ ଡଲାରର ନୋଟ୍ । ହାତରୁ ବରଫର ବୋମାଟା ପକାଇ ଦେଇ, ଛକ ପାର ହୋଇ ସେ ଆଗେଇ ଗଲା ସାମନାର ବଡ଼ଟ ଦୋକାନଟା ପାଖକୁ । ସେଦିନ ରବିବାର, ଦୋକାନ ବନ୍ଦ । ସାମନାରେ ଜାଲି ଜାଲି ଲୁହାର ବଡ଼ଟ ଫାଟକ । ତାଲା ବନ୍ଦ । କିନ୍ତୁ ଗ୍ଲେନ୍ ଇଚ୍ଛା କଲା ଫାଟକ ଖୋଲି ଯାଉ । ସଙ୍ଗେ ସଙ୍ଗେ ଫାଟକ ଖୋଲିଗଲା । ଗ୍ଲେନ୍ ପଶିଲା ଦୋକାନ ଭିତରେ । ଯାହା ଇଚ୍ଛା ହେଲା ତାହା କିଣିଲା । ଗୋଟିଏ ଫ୍ଲାଶ୍ ଲାଇଟ୍, ହଳେ ଆଇସ୍ ସ୍କେଟ୍, ବଡ଼ ସ୍କାଉଟ୍ ଛୁରୀଟିଏ, ବାଇନୋକ୍ୟୁଲାର ହଳେ, ଦେବୀ ମେରୀଙ୍କର ବଡ଼ ଚିତ୍ରପଟଟିଏ, ଆହୁରି ଏମିତି ଅନେକ ଅନେକ ଜିନିଷ । ଲକ୍ଷେ ଡଲାରର ବିଲ୍ ପରିଶୋଧ କରି ଦେଇ ସେ ବାହାରିଗଲା ଦୋକାନରୁ ।

ଦ୍ୱାଦଶ ଷ୍ଟ୍ରୀଟ ନିକଟରେ ସେ ପୁଣି ଆଭେନ୍ୟୁ ପାରହୋଇ "ଗ୍ରୀନ୍‌ଉଇଚ୍" ସିନେମା ଗୃହ ନିକଟକୁ ଗଲା । ସିନେମା ଗୃହର ବାରଣ୍ଡାରେ ବୁଲି ବୁଲି ଦେଖିଲା କାନ୍ଥରେ ପ୍ରଦର୍ଶିତ ହୋଇଥିବା ଛବି ଗୁଡ଼ାକୁ । ଠିକ୍ କଲା ଅଭିନେତ୍ରୀ ଅନିତା ଲୁଇସ୍ ଖୁବ୍ ସୁନ୍ଦରୀ, ନର୍ମା ଶିଏରର୍‌ଠାରୁ ବି ବେଶି ସୁନ୍ଦରୀ । ତା ଆଗରେ ନର୍ମା ଶିଏରର୍ କିଛି ନୁହେଁ । ଅନିତା ଲୁଇସର ଓଠରେ ସେ ଚୁମାଟିଏ ଆଙ୍କିଦେଲା । ଉଠେଇ ଯାଇ ବସିଲେ ଅନିତାର ଦଶଲକ୍ଷ ଡଲାର ମୂଲ୍ୟରେ ନିର୍ମିତ ସନ୍ତରଣ କୁଣ୍ଡ କୂଳରେ । ସେଇଠି ପୁଣି ସେ ଅନିତାଠୁ ଚୁମା ଖାଇଲା । ଅନିତା ତାକୁ କହିବାକୁ ଯାଉଛି ସେ କେଡ଼େ ସୁନ୍ଦର, ଠିକ୍ ସେଇ ସମୟରେ ସିନେମାର ଦରୱାନ୍ ଆସି କହିଲା, "ଇରେ, ଟୋକା କ'ଣ କରୁଛୁ ତୁ ଏଇଠି, ଯା' ଯା' ।" ଗ୍ଲେନ୍ ଉଠି ଦୌଡ଼ି ଚାଲିଗଲା ସେଇଠୁ ।

ତାପରେ ଏକାଦଶ ଷ୍ଟ୍ରୀଟ୍‌ର ସପ୍ତମ ଆଭେନ୍ୟୁ ନିକଟରେ ଥିବା ଗୋଟିଏ ରୁଟି ଦୋକାନରେ ଯାଇ ସେ ହାଜର ହେଲା । ସଙ୍ଗେ ସଙ୍ଗେ

ଶୋଷ୍ଟାକ ପରେ ଗୋଟାଏ କରି ଖାଇ ଚାଲିଲା ଚକ୍‌ଲେଟ୍ କେକ୍, ନେପୋଲିୟନ୍ ଗୋଟାଏ, ଶାର୍ଲୋଟ ରସ୍ ଗୋଟାଏ, କେତୋଟି ପିଚ୍‌କେକ୍, ଆଉ ମେଞ୍ଚାଏ ରବଡ଼ି । ତାପରେ ସେ ଠିକ୍ କଲା ଦୋକାନଟାକୁ କିଣିନେଲେ ତ ହୁଅନ୍ତା । ପକେଟରୁ ନୋଟ ବାହାର କରିବାକୁ ଯାଉଛି ଠିକ୍ ଏତିକିବେଳେ ମୋଟା ମାଇକେଲଆଟେ ଦୋକାନ ଭିତରୁ ବାହାରି ଆସି ପାଟି କରି ଉଠିଲା, "ଆରେ ମେଇ କାଚ ଆଲମାରି ପାଖରେ ଠିଆ ହୋଇଛୁ କାହିଁକି ? ଉଠ୍ ଉଠ୍, ଯା' ସେଇଠୁ ।"

ବିରକ୍ତ ହୋଇ ଚାର୍ଲି ସେଇଠୁ ଫେରି ଆସିଲା । ସପ୍ତମ ଆଭେନ୍ୟୁ ଦେଇ ଚାଲିଲା ଘରମୁହାଁ ହୋଇ । ଯାଉ ଯାଉ ବାଟରେ ଦେଖିଲା ଗୋଟିଏ ଗ୍ରୀକ୍ ମିଠେଇ ଦୋକାନ । ସେଇଠି ଟିକିଏ ଅଟକି ଯାଇ ପଚାରିଲା, "ହେ, ଶୁଣିଲ, ଏଇ ଶାକର ମିଠେଇ ଦାମ୍ କେତେ ?"

"ପେନିକୁ ଦୁଇଟା ।"

"ଆଉ ଇଏ ?"

"ପେନିକୁ ଚାରିଟା !"

"ଆଉ ଏଇ ଫେଣିର ଦାମ୍ କେତେ ?"

"ପେନିକୁ ଗୋଟିଏ । ତୋର କଣ ଦରକାର ?"

"ରହ, ମୁଁ ଘରୁ ଯାଇ ପଇସା ନେଇ ଆସେ । ଏଇ ଆଠ ମିନିଟ୍ ଭିତରେ ମୁଁ ଫେରି ଆସିବ ।"

ପୁଣି ସେ ରାସ୍ତା ପାର ହୋଇ ହାଉଷ୍ଟନ୍ ଗଳି ଭିତରେ ପଶିଲା । ଖାରି ଇଚ୍ଛା ହେଲା ତାର ମିଠେଇଟି କିଣିବା ପାଇଁ । ସେ ଜାଣେ ଗୋଟିଏ ଶାକରକୁ କେମିତି ଅଧଘଣ୍ଟାଏ ପର୍ଯ୍ୟନ୍ତ ଖାଇହେବ । ଜିଭ ଉପରେ ପକେଇ ଦେଇ ତାକୁ ଆସ୍ତେ ଆସ୍ତେ ଚୁରୁମି ଚୁରୁମି ଖାଇଲେ ବହୁତ ସମୟ ପର୍ଯ୍ୟନ୍ତ ତାକୁ ଖାଇହେବ । କିନ୍ତୁ ସେଥିପାଇଁ ଖୁବ୍ ମନବଳ ଦରକାର । ନହେଲେ ତାକୁ ଚୋବାଇ ଖାଇ ଦେବାର ପ୍ରଲୋଭନକୁ ଏଡ଼ି ହେବ ନାହିଁ । ଚୁରୁମି ଚୁରୁମି ଖାଇଲେ ସୁଆଦଟା ପାଟିରେ ବହୁତ ସମୟ ଧରି ରହେ । ଦାନ୍ତ ମଧ୍ୟ ଆଉ ଦରଜ ହୁଏ ନାହିଁ । ହାତର ଭିଜା ଦସ୍ତାନାଟାକୁ ବାହାର କରି ପାପୁଲିଟାକୁ ସେ ଫୁଙ୍କିବାକୁ ଲାଗିଲା । ହାତ କୋଲମାରି ଯାଉଛି । ଭାବିଲା

ଆଜି ରବିବାର ହୋଇ ନ ଥାନ୍ତା କି କେଡ଼େ ମଜା ହୋଇଥାନ୍ତା ! ରବିବାର ଦିନ କଳକାରଖାନା ସବୁ ବନ୍ଦ । ସ୍ଥିରଆଡ ଶୂନ୍‌ଶାନ୍, ଶ୍ମଶାନ ପରି ମନେହୁଏ ।

ଠିକ୍ ସେତିକି ବେଳେ ଗୋଟିଏ ବସ୍ ଆସି ପହଞ୍ଚିଗଲା । ବସ୍‌ଟି ଦକ୍ଷିଣ ଦିଗକୁ ଯିବ । ବୁଢ଼ା ଶିକ୍ସ ଆଉ ତାର ସ୍ତ୍ରୀ ଦିହେଁ ରାସ୍ତା ପାର ହୋଇ ଦଉଡ଼ୁଛନ୍ତି ବସ୍ ଧରିବାପାଇଁ । ସେମାନେ ସ୍କୁର୍ଲି ଘର ପାଖରେ ରହନ୍ତି । ଦୌଡ଼ି ଯାଉ ଯାଉ ବୁଢ଼ା ପକେଟରୁ ହାତ ବାହାର କରି ବସ୍‌କୁ ଧରିବାକୁ ଯାଉଛି, ହଠାତ୍ ତା ପକେଟ ଭିତରୁ ଅଧ ଡଲାର ମୁଦ୍ରାଟିଏ ଖସି ପଡ଼ିଲା । ବୁଢ଼ା ଅଟକିଗଲା ଅଧଡଲାରଟି ଗୋଟାଇ ଆଣିବା ପାଇଁ । କିନ୍ତୁ ପାରିଲା ନାହିଁ । ତେଣେ ବସ୍ ଛୁଟିଦେବା ଉପରେ । ଅଧଡଲାରଟି ଗଡ଼ି ଗଡ଼ି ଯାଇ ରାସ୍ତା କଡ଼ରେ ଥିବା ଗୋଟିଏ ନର୍ଦ୍ଦମା କୁଣ୍ଡ ଭିତରେ ପଡ଼ିଗଲା । ଅନ୍ୟ ଉପାୟ କିଛି ନଦେଖି ବୁଢ଼ା ଭୁଷ୍ଟୁରୁ ଭୁଷ୍ଟୁରୁ ହୋଇ ବସ୍ ଭିତରେ ଯାଇ ପଶିଲା । ବସ୍‌ର ଦ୍ୱାର ବନ୍ଦ କରି ଦେଇ ସେ ଭିତରେ ବସିବାକୁ ଯାଉଛି ଦେଖିଲା ସ୍କୁର୍ଲି ଯାଇ ସେଇ ନର୍ଦ୍ଦମା କୁଣ୍ଡ ପାଖରେ ହାଜର । ସ୍କୁର୍ଲିକୁ ଦେଖି ବୁଢ଼ା ଡାକ ପକାଇ କହିଲା, "ହେ, ସ୍କୁର୍ଲି, ତୁ ଯଦି ଅଧଡଲାରଟି ଖୋଜି ପାଇବୁ ତତେ ଗୋଟିଏ ସେଣ୍ଟ ଦେବି ।"

"ହଉ !" ଜବାବ ଦେଲା ସ୍କୁର୍ଲି ।

ବସ୍ ଚାଲିଗଲା । ସ୍କୁର୍ଲି ଦୌଡ଼ିଲା ଘରମୁହାଁ ହୋଇ । ନର୍ଦ୍ଦମା କୁଣ୍ଡ ଭିତରୁ ଅଧଡଲାରଟି ବାହାର କରିବାକୁ ହେଲେ ମେଞ୍ଚାଏ ଚୁଇଙ୍ଗ୍‌ଗାମ୍ ଆଉ ଦଉଡ଼ିଟିଏ ତାର ଦରକାର । ଅଧଡଲାର ! କିଛି କମ୍ ନୁହଁ ! ସେ ଏମିତି ଗୋଟାଏ ଦୁଇଟା ପେନି ନର୍ଦ୍ଦମା ଭିତରୁ ବେଳେ ବେଳେ ଗୋଟାଇଛି । କିନ୍ତୁ ଅଧଡଲାରଟିଏ ! ନାଁ, ସେ ଭାଗ୍ୟ ତାର କେବେ ହୋଇ ନାହିଁ । ଏଇ ପ୍ରଥମ । ସ୍ୱେଚ୍ଛ ଅତି ସହଜ କଥା—ବୁଢ଼ାକୁ କହିଦେଲେ ହେବ ଅଧଡଲାରଟି ମିଳିଲା ନାହିଁ ।

ଏକା ଦୌଡ଼ରେ ସେ ଯାଇ ଘରେ ହାଜର । ସେ ଏତେ ଉତ୍ତେଜିତ ହୋଇ ପଡ଼ିଥିଲା ଯେ, ତାର ଆଉ ଖିଆଲ ରହିଲା ନାହିଁ ସିଡ଼ିର ଗୋଟିଏ ପାହାଚ ଭାଙ୍ଗି ଯାଇଛି ବୋଲି । ଫଳରେ ଡାହାଣ ପାଦଟା ତାର ଖସିଗଲା ।

ସେ ଗଡ଼ି ଗଡ଼ି ଯାଇ ପଡ଼ିଲା ତଳେ । ଆଣ୍ଠୁଟା ତାର ପିଚି ହୋଇଗଲା ପାହାଚରେ । ଗ୍ଲେଟେଇ ଗ୍ଲେଟେଇ ଅବଶିଷ୍ଟ ପାହାଚ ଗୁଡ଼ାକ ସେ ପାରହେଲା । ଆଖିରେ ଲୁହ ଜମିଆସିଲାଣି ତାର ।

ମାଆ ତାର ଝରକା ପାଖରେ ବସି ବସି ସିଲେଇ କରୁଛି ।

"ମା'ମ ! ତିନିଟା ପେନି ଦେବୁ ମତେ ? ମୋର ଭାରି ଦରକାର !" ପଚାରିଲା ଗ୍ଲର୍ଲି । ତାର ବକ୍ତବ୍ୟଟା ପ୍ରଶ୍ନ ଆକାରରେ ଉପସ୍ଥାପିତ କରାଯାଇଥିଲେ ମଧ୍ୟ ସ୍ପଷ୍ଟଭାବେ ଜଣାଗଲା ତାହା ଯେମିତି ଏକ ନିର୍ଦ୍ଦେଶ । ବହୁଦିନର ଅଭିଜ୍ଞତାରୁ ସେ ଜାଣିଛି ନ ଧମକାଇଲେ ମା'ଠୁ କିଛି ମିଳିବ ନାହିଁ ତାକୁ ।

"ଚୁପ୍, ପାଟି କରନା", କହିଲା ମା' "ତୋ ବାପା ସେଇଠି ଶୋଇଛନ୍ତି । ସେଇ ଭିଜା ଯୋତା ଗୁଡ଼ାକ ପିନ୍ଧି ଘର ଭିତର କାହିଁକି ମଇଳା କରୁଛୁ ତୁ କହିଲୁ !"

"ମୁଁ ଏଇନେ ସାଙ୍ଗେ ସାଙ୍ଗେ ଫେରିଯିବି । ମତେ ତିନିଟା ପେନି ଦେଲୁ ତୁ ମା !"

"ମୋ ପାଖରେ ପେନି ଫେନି କିଛି ନାହିଁ । ମଙ୍ଗଳବାର ଦିନ ତୁତ ପେନିଟିଏ ନେଇଥିଲୁ ମିଠେଇ ଖାଇବା ପାଇଁ ।"

"ନାଇଁ, ମା, ମୋର ଭାରି ଦରକାର । ଦେଖ୍ ସେଇ ନର୍ଦ୍ଦମା କୁଣ୍ଡ ଭିତରେ ଚଉଠାଡ଼ଲାରଟିଏ ପଡ଼ିଛି । ଚୁଇଙ୍ଗ୍‌ଗାମ୍ ଟିକିଏ ହେଲେ ମୁଁ ତାକୁ ଉଠାଇ ଆଣନ୍ତି ।"

"ଏସ୍ତୁ ତୋର ଦରକାର ନୁହେଁ ? ମତେ ତୁ ଲୋଭ ଦେଖାଉଛୁ !" ମୁରୁକି ମୁରୁକି ହସିଲା ମା । "ଦେଖ୍ ଗ୍ଲର୍ଲି, ମୁଁ ତତେ ପେନିଟିଏ ଦେବି । ତିନିପେନି ଦେଇ ପାରିବି ନାହିଁ । କିନ୍ତୁ ମତେ ପୁଣି ଫେରାଇ ଦେବାକୁ ପଡ଼ିବ ।"

"ଗୋଟିଏ ପେନିରେ କିଛି ହେବ ନାହିଁ । ତିନି ପେନି ଦରକାର ତା ନହେଲେ ଚଳିବ ନାହିଁ । ଗୋଟିଏ ପେନିରେ ବଡ଼ ଚୁଇଙ୍ଗ୍ ଗାମ୍ ମିଳିବ ନାହିଁ । ତୁ କିଛି ବୁଝୁନୁ ମା' !"

ମା' ସେଷେଇଘରର ଭିତରକୁ ଯାଇ ଗ୍ଲେଟିଆ ମୁଣିଟିଏ ନେଇ ଫେରି ଆସିଲା । କହିଲା, "ଦେଖିଲୁ ମୋ ପାଖରେ ଦଶଟା ପେନି ମାତ୍ର ଅଛି । ଆଉ ଆଜ ରାତିରେ ଠାକୁର ପୂଜାପାଇଁ ଚଉଠା ଡଲାରଟିଏ ଅଛି ।"

"ତା ହେଲେ ମତେ ସେଇଟା ଦେ ।" ଛୁଙ୍କିବା ପାଇଁ ଟିକଏ ଅଟକି ଗଲା ସେ । "ମୁଁ ତାକୁ ଭଙ୍ଗେଇ ଦେବି । ତୋ ପଇସା ତତେ ଫେରାଇ ଦେବି ନିଶ୍ଚୟ ।"

"ନାଇଁ, ନାଇଁ, ଠାକୁର ପଇସା ମୁଁ ତତେ ଦେବି ନାହିଁ ।" ଏତକ କହି ମା' ତା ହାତକୁ କେବଳ ଦୁଇଟି ପେନି ବଢ଼ାଇ ଦେଲା ।

ମୁହଁଟା ଫଣ ଫଣ କରି ବଡ଼ କୁଣ୍ଠିତ ଭାବେ ଗୁଲି ତାକୁ ଗ୍ରହଣ କଲା । ସେ ଜାଣେ ଦୁଇ ପେନିରେ ତା କାମ ସହଜରେ ହେବ ନାହିଁ । କିନ୍ତୁ ସେ ମଧ୍ୟ ଜାଣେ ଠାକୁର ପଇସା ବିଷୟରେ ମା'ତାର ନଚ୍ଛୋଡ଼ବନ୍ଧା ।

"ମୋ ଦୁ'ପେନି ମତେ ନିଶ୍ଚୟ ଫେରାଇ ଦେବୁ ।" ମା' ପଛରୁ ଡାକ ପକାଇ କହିଲେ ।

"ହଉ", କହି ଗୁଲି ଯାଇ ସେଷେଇ ଘରେ ହାଜର ସୂତା ଖଣ୍ଡେ ଖୋଜିବା ପାଇଁ ।

"ଆରେ ପୁଅ", ମା'ର ସେଇ ଅତି ପରିଚିତ କରୁଣ ବିକଳ କଣ୍ଠସ୍ୱର ପୁଣି ଶୁଣାଗଲା, "ଆଗେ ତୁ ଏମିତି ବାପାଙ୍କୁ କି ମତେ ପେନିଟିଏ ମାଗିଥିଲେ ଆମେ ତତେ ଦୁଇ ପେନି ଦେଉଥାନ୍ତୁ, ଆଉ ଦୁଇ ପେନିଟିଏ ମାଗିଥିଲେ ଅଧ ଡଲାରଟିଏ ତୁ ପାଉଥାନ୍ତୁ ।"

ଗୁଲି ଖୋଜି ଖୋଜି ମେଞ୍ଚାଏ ମୋଟା ସୂତା ପାଇଲା । ସେଥିରୁ ଛଅହାତ ଲମ୍ବର ସୂତା ଖଣ୍ଡେ କାଟି ତରତର କରି ପୂରେଇ ଦେଲା ପକେଟ ଭିତରେ ।

ପୁଣି ଶୁଣାଗଲା ତାର ମାଆର କଣ୍ଠସ୍ୱର, "କିନ୍ତୁ ଏବେ ତ ତୋ ବାପା ପଙ୍ଗୁ ହୋଇ ପଡ଼ିଛନ୍ତି, ଆହା ବିଚରା ! ଅନ୍ୟମାନେ ଗୁଲିବୁଲି କାମ କରୁଥିଲା ବେଳେ ସେ ଗ୍ଲେଟେଇ ଗ୍ଲେଟେଇ କାମ କରୁଛନ୍ତି । ଅନ୍ୟମାନେ ଦିନରେ କାମ କଲାବେଳେ ସେ ରାତିରେ କାମ କରୁଛନ୍ତି । ଯାହା ପାଉଛନ୍ତି ସେ ତାଙ୍କର ଭାଗ୍ୟ ।"

"ହଉ, ମା', ମୁଁ ଯାଉଛି ।" ଉତ୍ତର ପାଇଁ ଅପେକ୍ଷା ନ କରି ଚୁଲି ଦଉଡ଼ି ଚାଲିଗଲା ଘର ବାହାରକୁ । ମନକୁ ମନ କହିଲା ସବୁ ମାଆମାନେ ଏମିତି ବଡ ଯନ୍ତ୍ରଣାଦାୟକ ଆଉ ବାପାମାନେ ବି ଆହୁରି ଖରାପ । ବାପା କ'ଣ ମଦଗ୍ଲାସେ ନଖାଇ ସେଇ ପଇସା ମତେ ଦେଇଦେଲେ ମୁଁ ଚକ୍‌ଲେଟ୍ କିଣି ପାରନ୍ତି ନାହିଁ । କିନ୍ତୁ ସେ କ'ଣ ଦେବେ କେବେ !

ସେ ସଙ୍ଗେ ସଙ୍ଗେ ରାସ୍ତା ପାର ହୋଇ ଚାଲିଗଲା କାର୍‌ମାଇନ୍ ଷ୍ଟ୍ରିଟର ସେଇ ଛକ ପାଖ ମିଠେଇ ଦୋକାନକୁ । ଦୋକାନୀ ହାତକୁ ଦି'ପେନି ବଢ଼ାଇ ଦେଇ ସେ କିଣି ଆଣିଲା ଦୁଇ ପ୍ୟାକେଟ ଚୁଇଙ୍ଗ୍‌ଗାମ୍ । ଗାମ୍‌ଟାକୁ ଚୋବେଇ ଚୋବେଇ ନେଞ୍ଚା ନେଞ୍ଚା ଆଉ ଅଠାଳିଆ ନକଲେ ସେଇଟା ସେଇ ଅଧଡ଼ଲାରଟିରେ ଲାଗିବ ନାହିଁ । ତେଣୁ ସେ ଗୋଟାଏ କଳରେ ଚୁଇଙ୍ଗ୍ ଗାମ୍ ଦିଟାକୁ ଚୋବେଇ ଚୋବେଇ ଚାଲିଲା ସେଇ ନର୍ଦ୍ଦମା କୁଣ୍ଡ ପାଖକୁ । କୁଣ୍ଡ ପାଖକୁ ଯାଇ ସେ ପେଟେଇ ଶୋଇ ପଡ଼ିଲା ସେଇ ବରଫାବୃତ ମାଟି ଉପରେ । ନର୍ଦ୍ଦମା କୁଣ୍ଡର ସିମେଣ୍ଟ ତଳଟାରେ ବହୁ ଆବର୍ଜନା ଭର୍ତ୍ତି ହୋଇ ରହିଛି । ମଝିରେ ମଝିରେ ଟୁକୁରା ଟୁକୁରା ବରଫ ଖଣ୍ଡ ଆଉ କୁଣ୍ଡର କରେ କରେ ପାଣି ଟିକିଏ ଟିକିଏ । ଧୀରେ ଧୀରେ ସୂକ୍ଷ୍ମ ଦୃଷ୍ଟିରେ ସେ ଅଧଡଲାରଟିକୁ ଖୋଜିବାକୁ ଲାଗିଲା । ନର୍ଦ୍ଦମା କୁଣ୍ଡର ଏପାଖକୁ ସେପାଖ ଘୁଞ୍ଚି ଘୁଞ୍ଚି ଆସ୍ତେ ଆସ୍ତେ ସେ ତାକୁ ଖୋଜିଲା । ଅସୀମ ଉତ୍ତେଜନାରେ ଛାତି ତା'ର ଧଡ଼ ଧଡ଼ ହେଉଛି । ମଥା ଭିତରେ ନାଚୁଛି ରୁଟି ଦୋକାନର ସୁନ୍ଦର ସୁନ୍ଦର ଲୋଭନୀୟ ଜିନିଷ ।

ଦଶମିନିଟ୍ ଏମିତି ବିତିଗଲା । କିନ୍ତୁ ଫଳ କିଛି ହେଲା ନାହିଁ । ସେ ଟିକିଏ ଉଠି ବସିଲା । କୋଲମାରି ପାଉଥିବା ହାତର ପାପୁଲି ଦି'ଟାକୁ ଘଷି ଘଷି ପାଟିରେ ଫୁଙ୍କିଲା । ପାପୁଲି ଦିଟା ଟିକିଏ ଉଷୁମ ହୋଇ ଆସିବା କ୍ଷଣି ସେ ପୁଣି ମାଟି ଉପରେ ଲେପଟାଇ ପଡ଼ି କୁଣ୍ଡର ସେଇ ଜାଲି ଜାଲି ଢାଙ୍କୁଣି ଭିତର ଦେଇ ଖୋଜି ଲାଗିଲା ସେଇ ମୁଦ୍ରାଟିକୁ ।

ଅବଶେଷରେ ସେ ଠାବ କଲା ମୁଦ୍ରାଟିକୁ । ମୁଦ୍ରାଟି ଅଧେ ପାଣି ଭିତରେ ଆଉ ଅଧେ ସେଇ ସିମେଣ୍ଟ ଉପରେ ପଡ଼ିଛି । କିନ୍ତୁ ତାକୁ ଲାଖି କରି ସୂତା ଲଗାଇବା ବଡ଼ ଦୁଃସାଧ୍ୟ କାମ । ଏକ କ୍ଷୀଣ ସ୍ମିତହାସ୍ୟବୋଳା ଓଠଦିଟାକୁ ଦୃଢ଼ ଭାବେ ଚୁପି ଧରି ସେ ସୂତା ଅଗରେ ଗୁଡ଼ାଏ ଗଣ୍ଡି

ପକାଇଲା । ତା ପରେ ଚ୍ୟୁଇଙ୍ଗ୍ ଗାମ୍‌ଟାକୁ ଚେପଟା କରି ସୂତା ଅଗରେ ବାନ୍ଧିଲା । ସୂତାର ଆର ଅଗଟା ଆଣି ନିଜ ଡାହାଣ ହାତର କଚଟିରେ ବାନ୍ଧିଲା ସେଇଟା ଯେମିତି ଆଉ ଖସି ନପଡ଼ିବ । ତାପରେ ଚ୍ୟୁଇଙ୍ଗ୍ ଗାମ୍‌ଟାକୁ ପୁଣି ଥରେ ପାଟିରେ ପୂରେଇ ଶେଷଥର ପାଇଁ ତାକୁ ଚୋବେଇ ଚୋବେଇ ଅଠାଳିଆ କରିଦେଲା । ତା ପରେ ଆସ୍ତେ ଆସ୍ତେ ନର୍ଦ୍ଦମା କୁଣ୍ଡର ଜାଲି ଭିତର ଦେଇ ସୂତାଟିକୁ ତଳକୁ ଖସାଇଲା ।

ଏଇ କାମରେ ଗୁର୍ଲି ଏତେ ବ୍ୟସ୍ତ ରହିଥିଲା ଯେ, ସେ ଲକ୍ଷ୍ୟକରି ପାରିଲା ନାହିଁ ତା ପଛରେ ଜଣେ ଲୋକ ଆସି ଠିଆ ହେଲାଣି । ଲୋକଟି କ୍ଷୁଦ୍ରକାୟ, ଅପରିଚ୍ଛନ୍ନ ଆଉ ରୋଗା । ବୟସ ପ୍ରାୟ ପଇଁଚାଳିଶ ହେବ । ତାର ପତଳା ରୋଗା ମୁହଁଟା ହେମାଳ ପବନରେ ନାଲ୍ ପଡ଼ିଯାଇଛି । କିନ୍ତୁ ଏଇ ନାଲିମାର ତଳେ ତଳେ କେମିତି ଏକ ଧୂସର ପାଣ୍ଡୁରତାର ସୁସ୍ପଷ୍ଟ ଆଭାସ ।

ଲୋକଟିକୁ ଦେଖିବା ପୂର୍ବରୁ ଗୁର୍ଲି ଶୁଣିପାରିଲା ତାର ଉପସ୍ଥିତିର ଶବ୍ଦ । ମନେ ହେଲା ତା ପଛପଟେ ଯେମିତି କିଏ ସଁ ସଁ ହେଉଛି, ବସ୍ତା ବୋଝ ଉଠାଇଲାବେଳେ ମଣିଷ ଯେମିତି ହୁଏ ଠିକ୍ ସେମିତି ଶବ୍ଦ । ଗୋଟାଏ ମୁହୂର୍ତ୍ତ ପାଇଁ ପଛକୁ ମୁହଁ ଫେରାଇ ଅନାଇଲା ଗୁର୍ଲି । ତାପରେ ପୁଣି ତା କାମରେ ମନଦେଲା । ତା କାମର ସବୁଠାରୁ ଦୁଃସାଧ୍ୟ ମୁହୂର୍ତ୍ତ ଏଇନେ ଉପସ୍ଥିତ । ତେଣୁ ସେ ତାର ସମସ୍ତ ମନନ ଶକ୍ତିକୁ କେନ୍ଦ୍ରୀଭୂତ କରି କାମରେ ଲାଗିପଡ଼ିଲା । ସୂତା ଅଗରେ ବନ୍ଧା ହୋଇଥିବା ଚ୍ୟୁଇଙ୍ଗ୍-ଗାମ୍‌ଟି ଏତେ ଓଜନିଆ ନୁହେଁ ଯେ ସୂତାଟିକୁ ସେ ସିଧାକରି ଟାଣିଧରି ରଖିପାରିବ । ତେଣୁ ସୂତାଟିକୁ ଉପରକୁ ଉଠାଇ ଠିକ୍ ଲକ୍ଷ୍ୟକରି ଟିକିଏ ଜୋରରେ ତଳକୁ ଛାଡ଼ି ନ ଦେଲେ ଅଠାଳିଆ ଚୁଇଙ୍ଗ୍‌ଗାମ୍‌ଟି ମୁଦ୍ରାଟିରେ ଯାଇ ଲାଗିବ ନାହିଁ । ଠିକ୍‌ଭାବେ ଲକ୍ଷ୍ୟକରିବା ପାଇଁ ହୁଏତ ତାକୁ ଶହେଥର ଚେଷ୍ଟା କରିବାକୁ ପଡ଼ିପାରେ ।

ଗୁର୍ଲିର ଏହି ପ୍ରଚେଷ୍ଟାକୁ ଲୋକଟି ମୁହୂର୍ତ୍ତକ ପାଇଁ ନୀରବରେ ଲକ୍ଷ୍ୟକରି ଠିଆହେଲା । ତାପରେ ଗୁର୍ଲି ପାଖରେ ଆଣ୍ଠୁମାଡ଼ି ବସିପଡ଼ି ମୋଟା କର୍କଶ କଣ୍ଠରେ ଆଶ୍ଚର୍ଯ୍ୟ ହୋଇ କହିଉଠିଲା, "ଏଃ ! ଅଧ-

ଉଠାଉଛିଏରେ !" ବଲମ୍ବିତ ସୂତା ଖିଅର ଧାରେ ଧାରେ ଦୃଷ୍ଟି ତାର ଖସିଗଲା ତଳକୁ, ମୁଦ୍ରାଟି ଉପରକୁ । "ଏମିତି ଉଠାଇବା ଭାରି କଷ୍ଟ, ନୁହଁ ?" ଭୁନା ଭୁନା ସେ ପଚାରିଲା ଗୁଲିଁକୁ ।

ଗୁଲିଁ ତାର ପ୍ରଶ୍ନର କୌଣସି ଉତ୍ତର ଦେଲା ନାହିଁ ।

ଲୋକଟି ଲକ୍ଷ୍ୟକଲା ଗୁଲିଁର ବିଫଳ ପ୍ରଚେଷ୍ଟାକୁ । ତାପରେ କହିଲା, "ଏଇ ଥଣ୍ଡାରେ ଚୁଇଙ୍ଗ୍‌ଗାମ୍‌ଟା ସଙ୍ଗେ ସଙ୍ଗେ ଥଣ୍ଡା ହୋଇ-ଯାଉଛି । ସେଇଟା ଆଉ ସେଇ ମୁଦ୍ରାରେ ଲାଗିବ କେମିତି ! ତୁ ଏମିତି ପାରିବୁ ବୋଲି ମୋର କାହିଁକି ମନେ ହେଉ ନାହିଁରେ, ଟୋକା ! ଏଇତ ଅନ୍ଧାର ଘୋଟି ଆସିଲାଣି । ଏମିତି କାମ ପାଇଁ ଖାଣ୍ଟିମତ ଯନ୍ତ୍ର ଦରକାର । ଏଇ ସୂତାରେ ତୁ ତାକୁ ବାହାର କରିପାରିବୁ ନାହିଁ ।"

ତା ଆଡ଼କୁ ନ ଚାହିଁ ଗୁଲିଁ ଜୋରରେ ପାଟିକରି ଉଠିଲା, "ତତେ କିଏ ପଚାରୁଛି, ତୁ ଚୁପ୍‌କର !"

ଲୋକଟି ଉଠି ଠିଆହେଲା । ଗୋଟାଏ ମୁହୂର୍ତ୍ତ ଭିତରେ ଚାରି-ଆଡ଼େ ଏକ ସସ୍ତ ନଜର ବୁଲାଇ ଆଣିଲା । କେହି କୁଆଡ଼େ ନାହିଁ । କେତୋଟି ପାହାଣ୍ଡ ପଛକୁ ହଟିଯାଇ ଦେହର ଓଭର କୋଟ୍‌ର ବୋତାମ ଖୋଲିଲା । କୋଟ୍ ଭିତର ପଟେ ଗୋଟିଏ ଚମଡ଼ା ଫିତାରେ ଲଟକା ହୋଇ ରହିଛି ଗୁଡ଼ାଏ ସରୁ ସରୁ ଲମ୍ବା ଲମ୍ବା ବାଡ଼ି । ପ୍ରତ୍ୟେକଟି ପ୍ରାୟ ତିନିଫୁଟ ଲମ୍ବା ହେବ । ପ୍ରତ୍ୟେକର ଅଗରେ ଗୋଟିଏ ଗୋଟିଏ ରବର ଖୋପ ଲଗାହୋଇଛି ଯେମିତି ଗୋଟିକୁ ଗୋଟିଏ ଯୋଡ଼ ହୁଆଯାଇ ପାରିବ । ବେଶ୍ ଅଭ୍ୟସ୍ତ ଦକ୍ଷତାର ସହିତ ସେ ବାଡିଗୁଡ଼ିକୁ ଯୋଡ଼ି ଦେଇଗଲା । ଶେଷ ବାଡ଼ିଟିର ଅଗରେ ଗୋଟିଏ ଛୋଟ ରବର ସାକ୍‌ଶନ୍ କପ୍ ଲଗାହୋଇଛି । ଲୋକଟି ଆଗେଇ ଗଲା ନର୍ଦ୍ଦମା କୁଣ୍ଡ ପାଖକୁ । କୁଣ୍ଡର ଲୁହା ଜାଲି ଉପରେ ବାଡ଼ିଗୁଡ଼ିକର ଗୋଟିଏ ଅଗ ବାନ୍ଧିଦେଇ ଆର ଅଗଟା ଧୀରେ ଧୀରେ ସୁନ୍ଦର ଭାବେ କୁଣ୍ଡ ଭିତରକୁ ଖସେଇ ଦେଲା । କୁଣ୍ଡ ମୁହଁରେ ଆଣ୍ଠୁମାଡ଼ି ବସିପଡ଼ି ଖୁସିହୋଇ କହିଲା, "ଦେଖ୍ ଏଥର, ଓସ୍ତାଦମାନେ କେମିତି ଏଇ କାମକରନ୍ତି ।" ଗୁଲିଁ ଆଡ଼କୁ ନ ଅନାଇ ପୁଣି କହିଲା, "ସେ ଗୋଟାଏ ଉପାୟ । ଆଉ ଗୋଟାଏ କୌଶଳ

ହେଉଛି ମହମ୍ କପ୍ । ସେଥିରେ ଚୂଡ଼ ମଧ୍ୟ କୁଣ୍ଡଭିତରୁ ଉଠି ଆସିବ । କିନ୍ତୁ ରେଜାରେଜ ପଇସା ପଡ଼ିଥିଲେ ଏଇ ସାକ୍‌ଶନ୍ କପ୍ କୌଶଳ ସୁବିଧା……"

ଉନ୍ମତ୍ତ କ୍ରୋଧରେ ଗର୍ଜି ଉଠିଲା ଗୁର୍ଲି, "ମତଲବ କ'ଣ ତୋର ? କ'ଣ କରୁଛୁ ?"

"ଆରେ ଟୋକା, ଦେଖ୍ ! ଓସ୍ତାଦମାନେ କେମିତି ଏଇ କାମ କରନ୍ତି ତତେ ଦେଖାଇ ଦେବି !"

"ଦୂର୍ ହୁଅରେ ଏଇଠୁ !" ବାଁ ହାତରେ ଲୋକଟାର ଜାମାଟାକୁ ହିଂସ୍ରଭାବେ ଟାଣିବାକୁ ଲାଗିଲା ଗୁର୍ଲି, "ଦୂର୍ ହୁଅରେ !"

ନୀରସ, ବିକଟ ହସଟାଏ ହସିଦେଇ ଲୋକଟା ଗୁର୍ଲିର ଆକ୍ର-ମଣକୁ ଏଡ଼ି ଦେଇ ଦେଇ କହିଲା, "ତୁ କାହିଁକି ଏମିତି ହେଉଛୁ ! ତୁ କ'ଣ କେବେ ଏଇଟା କୁଣ୍ଡଭିତରୁ ବାହାର କରି ପାରିବୁ ? ମୁଁ ବାହାର ନ କଲେ ଆଉ କିଏ ହେଲେ ଏଇଟା ବାହାରକରି ନେଇଯିବ । ତୋର ବା ଲାଭ କ'ଣ ହେବ ସେଥିରେ ?"

"କିଏ କହିଲା ମୁଁ ବାହାର କରି ପାରିବି ନାହିଁ ?" ଗର୍ଜି ଉଠିଲା ଗୁର୍ଲି । "ତୁ ଛାଡ଼ିଦେ ତାକୁ । ସେଇଟା ମୋର । ତୁ ଯା' ବାବୁ ଏଇଠୁ । ଦୟାକରି ଚାଲ୍ଯା ।"

"ମୁଁ ତତେ ଏଥିରୁ ସେଣ୍ଟିଟିଏ ଦେବି ।" କହିଲା ଲୋକଟି ।

ଗୁର୍ଲି ନିଜର ସୂତାଟିକୁ ଦୃଢ଼ତାର ସହିତ କୁଣ୍ଡଭିତରୁ ଟାଣିଆଣି ପକେଟରେ ଭର୍ତ୍ତି କରି ଦେଲା । ତାପରେ ଉଠି ଠିଆ ହେଲା । ଲୋକଟାର ପଛକୁ ବୁଲିଯାଇ ନିଜର ସମସ୍ତ ଶକ୍ତି ସଞ୍ଚୟ କରି ମାରିଲା ଏକ ଗୋଇଠା ତାର ପିଠି ଉପରକୁ । ଯନ୍ତ୍ରଣାରେ ଲୋକଟା ଚିତ୍କାର କରି ଉଠିଲା । ଆଖି ପିଛୁଳାକେ ଗୁର୍ଲି ହଟିଗଲା ଦଶପାଦ ପଛକୁ ।

ପିଠିଟାକୁ ଆଉଁସି ଆଉଁସି ଲୋକଟା କୁନ୍ଥେଇ କୁନ୍ଥେଇ କହିଲା, "ଶଳା, ମାରିଦେବାରେ ମଣିଷକୁ ! ରହ ତତେ ଦେଉଛି । ତୋ ବେକ ମୋଡ଼ି ଦେବି ରହ, ବଦ୍‌ମାସ ଟୋକା କୋଉଠିକାର ! ଶଳା, ମୋ

ବାଡ଼ଟା ଏଇନେ ଖସି ପଡ଼ିଥାନ୍ତା ତଳକୁ ! କ୍ରୋଧୋନ୍ମତ୍ତ ଆଖିରେ ପରସ୍ପରକୁ ଅନେଇ ରହିଲେ ସେମାନେ ଗୋଟାଏ ମୁହୂର୍ତ୍ତ ପାଇଁ, ନିସ୍ପନ୍ଦଭାବେ, ଅନିଶ୍ଚିତ ଭାବେ । ସେମାନଙ୍କ ମଧ୍ୟରେ ତିରିଶ ବର୍ଷର ବ୍ୟବଧାନ । ତଥାପି ସେମାନଙ୍କ ମଧ୍ୟରେ କେମିତି ଏକ ଅଦ୍ଭୁତ ରକମର ସାଦୃଶ୍ୟ ରହିଛି— ଉଭୟେ କ୍ଷୁଦ୍ରକାୟ, ବାଳକଟି ବାଳକପରି ଷ୍ଟୋଟ, ମଣିଷଟି ମଣିଷପରି ଷ୍ଟୋଟ । ଉଭୟଙ୍କର ଚେହେରା ରୁକ୍ଷ, କର୍କଶ । ଢେଷ୍ଟୁକନ୍ଠା ଦେହ ଦୁହିଁଙ୍କର ।

ଗୁର୍ଲି ଉପରେ ସତର୍କ ଦୃଷ୍ଟି ରଖି ଲୋକଟା ପୁଣି ଆଣ୍ଠେଇ ପଡ଼ିଲା କୁଣ୍ଡ ପାଖରେ । ବାଡ଼ଟାକୁ ପୁଣି କୁଣ୍ଡ ଭିତରକୁ ଖସେଇ ଦେଲା, କିନ୍ତୁ ନିଜର ମଥାଟାକୁ ସିଧା ରଖିଥାଏ । କିଂକର୍ତ୍ତବ୍ୟ ବିମୂଢ଼ ହୋଇ ଗୁର୍ଲି ସେଇଠି ଠିଆହୋଇ ରହିଲା ଗୋଟାଏ ମୁହୂର୍ତ୍ତ । ତାପରେ ଦଉଡ଼ିଗଲା ପାଖରେ ଥିବା ଗୋଟାଏ ବଡ଼ଟ ବରଫ ସ୍ତୁପ ନିକଟକୁ । ଲୋକଟି ବୁଲି-ବସିଲା ଗୁର୍ଲିର ସମ୍ମୁଖୀନ ହୋଇ ରହିବା ପାଇଁ । କହିଲା, "ତୁ ଆଉ ପାଦେ ଆଗେଇଲୁ ତ ତୋ ବେକକୁ ମୋଡ଼ିଦେବି । ମୁଁ କହିରଖୁଛି ଏସବୁ ବଦ୍‌ମାସୀ ମୋ ପାଖରେ ଆଉ ଚଳିବ ନାହିଁ । ତତେ ଯେଉଁ ସେଣ୍ଟଟି ଦେବି ବୋଲି କହୁଥିଲି ତାବି ଆଉ ଦେବି ନାହିଁ । ମୁଁ ରାଗିଗଲିଣି ଏଥର, ଜାଣିଥା !"

ବରଫ ଗଦାରୁ ଗୁର୍ଲି ଟୁକୁରାଏ ବରଫ ଗୋଟାଇଲା । ସମସ୍ତ ଶକ୍ତି ଦେଇ ଲୋକଟା ଉପରକୁ ନିକ୍ଷେପ କଲା । କିନ୍ତୁ ସେଇଟା ତା ଦେହରେ ନବାଜି ଅଳ୍ପକେ ଖସିଗଲା । ତଥାପି ଲୋକଟା ଉତ୍ପୁଖିତ ହୋଇ ଡେଇଁପଡ଼ି ଠିଆ ହୋଇଗଲା ଆଉ ବାଡ଼ଟାକୁ କୁଣ୍ଡ ଭିତରୁ ଟାଣିଆଣିଲା । ଗୁର୍ଲି ପୁଣି ହଟିଗଲା ସେଇ ବରଫର ସ୍ତୁପ ଆଡ଼କୁ । ରାଗରେ ଥର ଥର ଶତ୍ରୁ ଉପରେ ତୀକ୍ଷ୍ଣ ଦୃଷ୍ଟି ନିବଦ୍ଧରଖି ସେ ବରଫ ଗଦାକୁ ଖଦାଳିବାକୁ ଲାଗିଲା ।

ଲୋକଟା ରାଗିଯାଇ ପାଟିକରି ଉଠିଲା, "ତୁ ମାଡ଼ ମୁଲଉଛୁ । ମୁହଁରେ ଟୋକା !"

ଲୋକଟି ମୁହଁ ଫେରାଇ ନେଲା ରାଜପଥ ଆଡ଼େ । ପଥ ନିର୍ଜନ, ନିଶବ୍ଦ । ଅନ୍ଧାର ଘୋଟି ଘୋଟି ଆସୁଛି । ଗୁର୍ଲି ଆଡ଼କୁ ପୁଣି ଅନାଇ

ଲୋକଟି ହଠାତ୍ ପଚାରିଲା, "ତୁ କ'ଣ ଭାବୁଛୁ ମତେ ଏସବୁ ଭଲ ଲାଗୁଛି ? ମାତ୍ର ଅଧଡଲାରଟିଏ ପାଇଁ ତୋରଭଳି ଟୋକା ବେକଟେ ସାଙ୍ଗରେ ଲଢ଼େଇ କରିବାକୁ କ'ଣ ମତେ ଭଲଲାଗେ ବୋଲି ଭାବୁଛୁ ?"

ଗୋଟାଏ ବରଫଖଣ୍ଡ ଆସି ବାଜିଲା ତାର ଆଣ୍ଠୁ ଉପରେ, ଛିଣ୍ଡା କୋଟ୍‌ଟା ଯେଉଁ ପର୍ଯ୍ୟନ୍ତ ଝୋଡ଼େଇ ହୋଇ ରହିଛି ଠିକ୍ ତାର ତଳକୁ । ହାତ ମୁଠାକରି ଉଚ୍ଚେଇଲା ସେ ଚାର୍ଲି ଆଡେ । ରାଗରେ ତାର କଣ୍ଠରୋଧ ହୋଇ ଆସିଲା । "ରହିଥା, ଟୋକା, ତୋ ପିଠି ଚଲୁ ଛଡ଼େଇ ଦେଉଛି !" ଦମ୍ ନେବା ପାଇଁ ସେ ଅଟକି ଗଲା ଟିକିଏ । ତାପରେ ବାଡ଼ିଟାକୁ ତଳେ ଫୋପାଡ଼ି ଦେଇ ଦୌଡ଼ି ଗଲା ଆଗକୁ । ଚାର୍ଲିବି ସଙ୍ଗେ ସଙ୍ଗେ ଛୁଟିଗଲା ତା କବଳରୁ ବର୍ତ୍ତିଯିବା ପାଇଁ । ଠିକ୍ ତା ପର-ମୁହୂର୍ତ୍ତରେ ସୁନ୍ଦର ସ୍ୱଚ୍ଛ ବରଫର ଡେଲାଟିଏ ଆସି ବାଜିଲା ଲୋକଟିର ପୂରା କପାଳ ଉପରେ । ହାତରେ କପାଳକୁ ଚିପିଧରି ଲୋକଟା ଥମିଗଲା । ଅର୍ଦ୍ଧେକ ଯନ୍ତ୍ରଣାରେ ଲୋକଟା କାନ୍ଦ କାନ୍ଦ ହୋଇଗଲାଣି ।

"କେମିତି ଲାଗିଲା ? ମଜା ପାଇଲୁ ଶଳା ବଦ୍‌ମାସ !" ପିଲାଟି ପାଟିକରି ଉଠିଲା ଦୂରରୁ ।

ଲୋକଟି ଚାର୍ଲିକୁ ଗୋଡ଼େଇ ଗଲା କିନ୍ତୁ ତାକୁ ଧରିପାରିଲା ନାହିଁ । ଚାର୍ଲି ତାଠାରୁ ଆହୁରି ଦୁଇଗୁଣ ଚଞ୍ଚଳ । ତାଛଡ଼ା ବରଫର ଡେଲାମାଡ଼ରେ ଚାର୍ଲି ବରାବର ଚଳାଇଥାଏ । ଗୋଟିଏ ମିନିଟ୍ ପରେ ଲୋକଟି ବେଦମ୍ ହୋଇ ଥମିଗଲା । ପାଟିଟା ହାଁକରି ମେଲା ହୋଇ ରହିଲା ତାର । ଛାତିକୁ ହାତରେ ଚିପିଧରି ସେ ପୁଣି କୁଣ୍ଡ ଉପରେ ଆଣ୍ଠୁମାଡ଼ି ବସିପଡ଼ି ଲମ୍ବା ବାଡ଼ିଟିକୁ କୁଣ୍ଡ ଭିତରକୁ ଖସାଇଲା ।

ଉନ୍ମତ୍ତ ଓ ଅସହାୟ ଆକ୍ରୋଶରେ ବାଳକ ତାର ଆକ୍ରମଣର କୌଶଳ ପରିବର୍ତ୍ତନ କଲା । ଗୋଟାଏ କୋଣରୁ ତିର୍ଯ୍ୟକ ଗତିରେ ସେ ଛୁଟି ଆସିଲା ଲୋକଟା ଆଡ଼କୁ । ମେଞ୍ଚାଏ ବରଫଧରି ଫୋପାଡ଼ି ଦେଲା ତା ପଛପଟକୁ । ବରଫ ମେଞ୍ଚାଟା ଯାଇ ଠିକ୍ ବେକ ମୂଣ୍ଡରେ ବସିଗଲା ଲୋକଟାର । ଥରିଉଠିଲା ଲୋକର ଦେହଟା । କିନ୍ତୁ ସେ ଆଉ ମୁହଁ-ବୁଲାଇ ପଛକୁ ଫେରି ଚାହିଁଲା ନାହିଁ । ତାପରେ ବାଡ଼ିଟାକୁ କୁଣ୍ଡଭିତରୁ ଉଠାଇ ସେ ତାକୁ ଜାଲିର ଆଉ ଗୋଟାଏ କଣାଭିତର ଦେଇ ଗଳେଇ-

ବାକୁ ଚେଷ୍ଟା କରୁଛି ଏତିକବେଳେ ଗୁର୍ଲି ପୁଣି ଦୌଡ଼ି ଆସିଲା ତାର ଆଡ଼କୁ । ଏଥର ତାର ଗୋଡ଼ଟା ଉଦ୍ୟତ ହୋଇ ରହିଛି ଲୋକର ପିଠି ଉପରକୁ । ଗାଳି ଦେଇ ଦେଇ ଲୋକଟା ଫଟ୍‌କନା ଉଠି ଠିଆ ହୋଇ ପଡ଼ିଲା ଗୁର୍ଲିର ସମ୍ମୁଖୀନ ହୋଇ । ଆତଙ୍କରେ ଗୁର୍ଲି ଖସି ପଳାଇଯିବାକୁ ଚେଷ୍ଟା କରିବା ସମୟରେ ସେ ତାର ହାତଟାକୁ ଧରି ଘୋସାରି ଆଣିଲା । ଏଥର ବାଳକଟି ତାର ଆୟତ୍ତରେ । ବାଳକର ଦୁଇଟିଯାକ ବାହୁ ଏଇନେ ତା କବଳରେ । ଉଭୟଙ୍କ ମଝିରେ ବାଡ଼ିଟି ପଡ଼ିରହିଛି ନର୍ଦ୍ଦମା କୁଣ୍ଡର ଲୁହା ଜାଲି ଉପରେ ।

ଗୁର୍ଲିକୁ ଦୁଇ ହାତରେ ପରସ୍ପେ ଝାଙ୍କିଦେଇ ଲୋକଟା ଗର୍ଜିଉଠିଲା, "ତୋ ତଣ୍ଟି ଚିପି ଦେବି ଏଥର ! ଶଳା ଚୁଟିଆ ମୂଷା କୋଉଠିକାର ! କିନ୍ତୁ, ଦେଖ୍ ତୁ ଟୋକା ବୋଲି ବକଟେ, ମୋକଥା ଶୁଣ···ତତେ ଛାଡ଼ିଦେବି !"

କିନ୍ତୁ ଗୁର୍ଲି ଛଟିପିଟି ହୋଇ ଖସିଗଲା ତା କବଳରୁ ଆଉ ସଙ୍ଗେ ସଙ୍ଗେ ଲୋକର ପାଦଟାକୁ ତାର ଦୁଇ ପାଦରେ ଚକଟି ଦେଲା । ତାପରେ ସେ ଦୌଡ଼ି ଦୌଡ଼ି ହଟିଗଲା ପୁଣି ସେଇ ବରଫସ୍ତୂପର ଆଶ୍ରୟ ସ୍ଥଳକୁ । ଲୋକଟା ଅସହାୟ ଭାବେ ବଲ ବଲ କରି ଚାହିଁରହିଲା ଗୁର୍ଲି ଆଡ଼କୁ । ଅସହ୍ୟ ଯନ୍ତ୍ରଣାରେ ମୁଖମଣ୍ଡଳ ତାର ବିକଳ, ବିକୃତ ହୋଇ ଆସିଲାଣି । "ହେ ଭଗବାନ !" କହିଲା ସେ, "ଟୋକା ବୋଲି ବକଟେ, ଦେଖ ତାର ପ୍ରତାପ ! ଆରେ, ଶୁଣ୍, ମୁଁ କ'ଣ ତତେ ମାଇଲି ? ମୋ ହାତରେ ତୁ ଧରାପଡ଼ିଥିଲେ ମଧ୍ୟ ମୁଁ ତ ପୁଣି ତତେ ଛାଡ଼ିଦେଲି ! କ'ଣ କହୁଛି, ମୋକଥା ଶୁଣୁ ।" ପୁଣି ଗୋଟାଏ ବରଫର ଢେଲା ଆସି ବାଜିଲା ତାର ଛାତିରେ । "ହଉ, ରହ ରହ," ବିକଳଭାବେ କହିଲା ଲୋକଟି, "ତୁ ମତେ ନ ଛାଡ଼ିଲେ ମୁଁ ସେଇ ଅଧଡଲାରଟି ବାହାର କରିପାରିବି ନାହିଁ କି ମୁଁ ତତେ ନ ଛାଡ଼ିଲେ ତୁ ମଧ୍ୟ ତାକୁ ବାହାର କରିପାରିବୁ ନାହିଁ । ଫଳରେ ଉଭୟେ ତାକୁ ହରାଇବା । ଦେଖ୍, ଅନ୍ଧାର ହୋଇ ଆସିଲାଣି । ଆ, ଅଧଡଲାରଟିକୁ ଅଧା ଅଧା କରନେବା—ତୋର ପଚିଶ ସେଣ୍ଟ୍, ମୋର ପଚିଶ ସେଣ୍ଟ୍ !"

"ନାଁ," ଦୃଢ଼ଭାବେ ପାଟିକରି ଉଠିଲା ଗୁର୍ଲି, "ସେଇଟା ମୋର ।" ତାର ସର୍ବାଙ୍ଗ ଥରି ଉଠୁଥାଏ ରାଗରେ ।

"ଆରେ, ତୁ କ'ଣ ବୁଝିପାରୁନୁ ଯେ, ୟାଡ଼ମଡ଼ ଗୋଟାଏ ଯନ୍ତ୍ର ନ ହେଲେ ସେଇଟା ବାହାରକରି ହେବନି !" ଲୋକର କଣ୍ଠରେ ଏଥର ଅନୁନୟର ସୂଚନା, "ଏଇ ଥଣ୍ଡାପାଗରେ ତୋର ସେଇ ଚୁଇଙ୍ଗ୍ ଗାମ୍ କିଛି କାମରେ ଆସିବ ନାହିଁ, ଜାଣୁ !"

"ନାଁ, ସେଇଟା ମୋର ।"

"ହେ ଭଗବାନ୍ ! ମୁଁ ଅବଶ୍ୟ ମାନୁଛି ତୁ ସେଇଟା ପ୍ରଥମେ ପାଇଛୁ । କିନ୍ତୁ, ଦେଖ୍, ମୋ ପାଖରେ ଗୋଟାଏ ସାକ୍‌ଶନ୍ କପ୍ ଅଛି । ମୁଁ ସେଥିରେ ମୁଦ୍ରାଟା ବାହାରକରି ଆଣିଲେ ଆମ ଦୁହିଁଙ୍କର ଲାଭ ହେବ ।"

"ନାଁ !"

"ହେ, ଭଗବାନ୍ ! ବୁଝୁନୁ ତୁ, ମୋର ସେଥିରୁ କିଛି ହେଲେ ମଧ୍ୟ ପାଇବା ଦରକାର ।" ଲୋକଟା ପାଟିକରି ଉଠିଲା, ଲଜ୍ଜା ଆଉ ତିକ୍ତତାରେ କଣ୍ଠସ୍ୱର ତାର ତିକ୍ତ ହୋଇ ଆସିଲାଣି । ସେ ପୁଣି କହିଚାଲିଲା, "ଆରେ ଟୋକା, ଯେତ ମୋର ପେଶା । ଏହାଛଡ଼ା ମୋର ଜୀବିକାର ଆଉ ଅନ୍ୟ କିଛି ପନ୍ଥା ନାହିଁ । ବୁଝି ପାରୁନୁ ତୁ ? ସାରାଦିନଧରି ମୁଁ ଏମିତି ଘୂରି ଘୂରି ବୁଲୁଛି । ପାହୁଲାଟିଏ ହେଲେ ବି ଆଜି କପାଳରେ ମୋର ଯୁଟିନାହିଁ । ମତେ ସେଥିରୁ ନିଶ୍ଚୟ ଗୋଟାଏ ଭାଗ ଦେବାକୁ ପଡ଼ିବ ତତେ । ନ ଦେଲେ ହେବ ନାହିଁ !"

"ନାଁ !"

ଅସହାୟ ଭାବେ ଲୋକଟା ହାତଦିଟାକୁ ଝୁଲେଇ ଦେଲା ! ଆଉ ହତାଶ କଣ୍ଠରେ ସେ ପୁଣି ପାଟିକରି ଉଠିଲା, "ଓଃ, ଟୋକା ବୋଲି ବିକେଟ ! ଏ ଟୋକା, ଆରେ ଟୋକା, ଶୁଣୁ, ତୁ ଯଦି ଆହୁରି ଦଶବର୍ଷ ବଡ଼ ହୋଇଥାନ୍ତୁ ତାହେଲେ ତୁ ସବୁକଥା ବୁଝିପାରନ୍ତୁ । ତୁ କ'ଣ ଭାବୁଛୁ ମତେ ଏଇ କାମ ଭଲ ଲାଗୁଛି ବୋଲି । ତୁ ଆହୁରି ଦଶବର୍ଷ ବଡ଼ ହୋଇ-ଥିଲେ ମୁଁ ତତେ ସବୁକଥା ବୁଝେଇ କହିପାରନ୍ତି । ତୁ ମଧ୍ୟ ବୁଝିପାରନ୍ତୁ ।"

ଚାର୍ଲିର ଓଠଦିଟା ଆହୁରି ଦୃଢ଼ଭାବେ ଚିପି ହୋଇଗଲା । ତାର ଷ୍ଟେଚ ଧଳା ମୁହଁଟାରେ ଥଣ୍ଡା ଲାଗି ଠାଏ ଠାଏ ଫାଟି ଫାଟି ଗଲାଣି ।

ସଗରେ ଆଖି ଦିଟା ଦାଉ ଦାଉ ହୋଇ ଜଳୁଛି । "ମୁଁ ଯଦି ଆଉରି ଦଶବର୍ଷ ବନ୍ଦୀ ହୋଇଥାନ୍ତି ତାହେଲେ'ତୋର ମୁହଁଟାକୁ ଛତୁକରି ଦେଇ ସାରନ୍ତିଣି ।" ଗର୍ଜି ଉଠିଲା ସେ ।

ଅସୀମ ଯନ୍ତ୍ରଣା ଓ ବେଦନାରେ ଲୋକଟା ଅତି କରୁଣ ଭାବେ ନଇଁପଡ଼ି ତଳୁ ତାର ସେଇ ଲମ୍ବା ବାଡ଼ିଟି ଉଠାଇଲା । ଆସ୍ତେ ଆସ୍ତେ ଟିକଏ ଓ୍ଲେଟେଇ ଓ୍ଲେଟେଇ ପିଠିଟାକୁ ହାତରେ ଘୃଷିଧରି ଧୀରେ ଧୀରେ ଚାଲିଗଲା । ଆଖିରୁ ତାର ଧାର ଧାର ହୋଇ ଲୁହ ବୋହି ଯାଉଥାଏ ।

ବିଜୟ ଉଲ୍ଲାସରେ ଥରି ଥରି ଠିଆ ହୋଇଛି ଗୁର୍ଲି । ମୁହଁଟା ତା'ର ପଥର ପାଲଟିଯାଇଛି ।

କେତେବେଳୁ ଯେ ଅନ୍ଧାର ହୋଇଗଲାଣି କେହି ଜାଣେ ନା ।



# ଓଭେଜନ୍

ଲୁଇ ମାନୁଏଲ୍ ଆବାନେଜା ଆରେଲ ପୋହଲ୍

[ ଲୁଇ ମାନୁଏଲ୍ ଆବାନେଜା ଆରେଲ ପୋହଲ୍ ଲ୍ୟାଟିନ୍ ଆମେରିକାର ଅନ୍ୟତମ ବିଶିଷ୍ଟ ଔପନ୍ୟାସିକ । ତାଙ୍କର ଜନ୍ମ ଭେନେଜୁଏଲା ରାଜ୍ୟରେ ୧୮୭୨ ରେ । ମୃତ୍ୟୁ ୧୯୩୭ ରେ । ଭେନେଜୁଏଲାର କୃଷି ଜୀବନର ଦୁଃଖ ଆଉ ସୁଖ, ଆଶା ଆଉ ବ୍ୟର୍ଥତା, ଭେନେଜୁଏଲାର ରୂପମୟ, ବୈଚିତ୍ର୍ୟମୟ ପ୍ରକୃତି ଓ ପରିବେଶ ତାଙ୍କର ସାହିତ୍ୟର ପ୍ରଧାନ ଉପାଦାନ । କେତେବେଳେ ହସେଇ ହସେଇ, କେତେବେଳେ ବିଦ୍ରୂପରେ ପୋଡ଼େଇ ଜଳେଇ ଆଉ ବା କେତେବେଳେ ଅତି ନିର୍ମମ, ଅତି ଗମ୍ଭୀର ହୋଇ ଜୀବନର ବହୁରୂପୀ ବିଭବ ଓ ବାସ୍ତବତା ପ୍ରତି ପାଠକର ଦୃଷ୍ଟିକୁ ସେ ଟାଣି ନେଇଛନ୍ତି । ]

ବନ୍ତ ପଡ଼ିକଟାର ଛକ ମୁଣ୍ଡରେ ଦଳେ ଅନୁସନ୍ଧିତ୍ସୁ ଲୋକ ଆତଙ୍କଗ୍ରସ୍ତ ହୋଇ ଭୁହାଇ ଭୁହାଇ କହି ଲାଗିଛନ୍ତି, "ଓଭେଜନ୍ ! ସିଏ କ'ଣ ଓଭେଜନ୍ ହୋଇପାରେ ?"

କିନ୍ତୁ ରାସ୍ତାରେ କେଉଁଠି କିଛି ଦେଖା ଯାଉନାହିଁ । କେବଳ ଆକାଶର ଉଜ୍ଜ୍ୱଳ ସୂର୍ଯ୍ୟ ରାସ୍ତାର ଉଡ଼ନ୍ତ ଧୂଳିପଟଳକୁ ସୁନେଲି ରଙ୍ଗରେ ରଞ୍ଜିତ କରିଦେଇ ଯାଉଛି ।

କେହି ତାର ପତ୍ତା ପାଇ ନାହାନ୍ତି । ତଥାପି ଯେଉଁ ସବୁ ସିପାହିଦଳ ଜୁଆଟାଠାରୁ ତାର ଅନୁଧାବନ କରି ଆସିଛନ୍ତି, ବାଟରେ ସେମାନଙ୍କୁ ଛତ୍ରଭଙ୍ଗ କରିଦେଇ ଝାଳନାଳ ହୋଇ ଦୌଡ଼ି ଆସିଛନ୍ତି ସେମାନେ କହନ୍ତି, ହଁ ସିଏ ଓଭେଜନ୍ ଛଡ଼ା ଆଉ କେହି ନୁହଁ । ଆତଙ୍କ ବଢ଼ି ବଢ଼ି ଚାଲିଛି । ଏପରି ଜଣେ ଲୋକ ଯେତେବେଳେ ପୁଲିସ କବଳରୁ

ଖସି ଯାଇ ବାହାରେ ବୁଲୁଛି ସେତେବେଳେ ସବୁ ଦନପଣ ଏଥର ଆଉ ଗାଁରେ ଘର ଦ୍ୱାର ମୁକୁଳା କରି ଲୋକଙ୍କ ପକ୍ଷରେ ଶୋଇବା ସମ୍ଭବ ନୁହଁ ।

ସବୁଥର ପରି ଏଥର ମଧ୍ୟ ଓଭେଜନ୍ ତାର ଅନୁଧାବନକାରୀମାନଙ୍କ ଆଖି ଆଗରେ ହଠାତ୍ କୁଆଡ଼େ ଉଭେଇ ଯାଇଛି । ଠିକ୍ ସେଉଁ ମୁହୂର୍ତ୍ତରେ ସେମାନେ ଭାବିଥିଲେ ଯେ, ଏଥର ଖାଲି ବନ୍ଧୁକର ଘୋଡ଼ାଟା ଉପରେ ହାତ ଟିପିଦେବା ମାତ୍ରେ ଦେହଟା ତାର ଗୁଳି ଫ୍ରେଟରେ ଚାଲୁଣୀ ପରି କଣା କଣା ହୋଇ ତଳକୁ ଲୋଟି ପଡ଼ିବ, ସେଉଁ ମୁହୂର୍ତ୍ତଟାକି ତାରି ପକ୍ଷରେ ଅତ୍ୟନ୍ତ ମାରାତ୍ମକ ଠିକ୍ ସେଇ ମୁହୂର୍ତ୍ତରେ ତାଙ୍କରି ଆଖିରେ ଧୂଳି ଦେଇ ସେ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା । ଦସ୍ୟୁ ଓଭେଜନ୍ ସେମାନଙ୍କ ଆଗରେ ଧୂଳିର ମେଘ ଉଡ଼େଇ ଦେଇ, ସେମାନଙ୍କ ଆଖିକୁ ଅନ୍ଧକରି ଦେଇ ହଠାତ୍ କୁଆଡ଼େ ଖସିଗଲା । ଓଭେଜନ୍ ଯାଦୁ ଜାଣେ, ଲୋକେ କହନ୍ତି, ଅନେକ କଳା ଯାଦୁ ଜାଣେ ।

କୌତୁହଳୀ ଲୋକଙ୍କର ଭିଡ଼ ଧୀରେ ଧୀରେ ଭାଙ୍ଗିଗଲା । ଘରକୁ ଫେରି ଆସିଲେ ସେମାନେ । ସମସ୍ତଙ୍କ ମୁହଁରେ ସେଇକଥା । ସେଇ ପୁରୁଣା କଥା । ସେଇ ଆତଙ୍କ ଆଉ ଅନୁଧାବନ । ଓଭେଜନ୍‌ର ସେଇ ପୁରୁଣା ଗୁଳୁସି । ସେତେବେଳକୁ ଓଭେଜନ୍ ହୁଏତ ସେଇ ଆଖପାଖରେ ଆଉ ନଥିବ କେଉଁଠି । ବହୁଦୂରକୁ ସେ ଚାଲିଯିବଣି ନିଶ୍ଚୟ ।

ବିଶାଳ ଆକାଶରେ ଆସ୍ତେ ଆସ୍ତେ ଜମି ଉଠୁଛି ଗୋଧୂଳିର ଲୋହିତ ଆଲୋକ, ଗୋଧୂଳିର ରେଶମୀ ଆଲୋକ, ସମ୍ମୋହକ ଆଲୋକ । ସମସ୍ତ ଗ୍ରାମାଞ୍ଚଳଟି ଧୀର ଶାନ୍ତ ହୋଇ ପଡ଼ୁଛି । ଗୀର୍ଜାର ଗମ୍ବୁଜ ଉପରେ ଲାଗିଛି ଧୂସର ରକ୍ତାଭ ଦୀପ୍ତିର ଝାପ୍‌ସା ସ୍ପର୍ଶ । ତଳେ ଟିକଏ ଦୂରରେ ପାହାଡ଼ୀ ତଟିନୀର ଗଭୀର ଗର୍ଭରେ ସଫଟିକ ଶୀତଳ ସ୍ୱଚ୍ଛ ସ୍ରୋତ ବୋହି ଯାଉଛି ଏକ ମୃଦୁ ମର୍ମରଣରେ । ତଟପଥର ଧାରେ ଧାରେ, ବଣବୁଦାର ଲତାଟରେ ଆଲୋକର ଛୋଟ ଛୋଟ ବୁଦ୍‌ବୁଦ୍ ଝଲମଲ କରି ଉଠୁଛି ।

ଛିନ୍ନବସ୍ତ୍ର ପରିହିତ ଲୋକ ଭିକାରୀଟିଏ ଧୀରେ ଧୀରେ ଅତି କଷ୍ଟରେ ତାର ସେଇ ବିକୃତ ସ୍ଫୀତ ପାଦଟାକୁ ଘୋଷାରି ଘୋଷାରି ଚାଲିଛି । ମୁହଁଟା ଫୁଲି ଯାଇଛି ତାର । ଓଠ ଦ'ଟା ମୋଟା ମୋଟା, ଚମଡ଼ା

ଶେତା ପଡ଼ିଯାଇଛି । ପାଣି ଭିତରେ ଚକ୍ ଚକ୍ କରୁଥିବା ଶିଉଳିବୋଳା ଚେପ୍ଟା ଚେପ୍ଟା ପଥର ଗୁଡ଼ାକ ଉପରେ ପାଦ ଦେଇ ସେ ଝରଣାଟିକୁ ପାରହେବା ପାଇଁ ପ୍ରୟାସ କରୁଛି । ଗୋଟିଏ ଲମ୍ବା ବାଡ଼ି ଉପରେ ଭର ଦେଇ ସେ ଚାଲୁଛି । କାନ୍ଧରୁ ଝୁଲି ପଡ଼ିଥିବା ଭିକ୍ଷାର ଝୁଲିଟା ଖାଲି ଦେହ କରରେ ତାର ବାଡେଇ ହେଉଛି । ଝୁଲିଟା ଶୂନ୍ୟ । କିଛି ବୋଇଲେ କିଛି ନାହିଁ ତା ଭିତରେ । ଏତିକି ଟିକିଏ ମାଟିଆ ପିଠା ବି ନାହିଁ ତା ଭିତରେ ଝୁଲିଟାକୁ ଫୁଲେଇ ଦେବାପାଇଁ ଟିକିଏ ।

ଭିକାଖ ଧୀରେ ଧୀରେ ଆଗଉଛି ବାଡ଼ିଟାରେ ପାଦତଳ ପଥରର ଅସ୍ଥିରତାକୁ ପରଖି ପରଖି, ବିକୃତ ସ୍ଫୀତ ପାଦଟାକୁ ଅତି ସନ୍ତର୍ପଣରେ ପଥର ଉପରେ ପକେଇ ପକେଇ । ପଥର ଉପରେ ଭାରସାମ୍ୟ ରଖି ପାଦ ପକାଇବା ଭାରି କଷ୍ଟ, ଭାରି ଅନିଶ୍ଚିତ । ଆଲୁଅରେ ଆଖି ଝଲସି ଯାଉଛି । ଭିକାଖ ଆଉ ପାରିଲା ନାହିଁ । ହଠାତ୍ ପଥର ଉପରେ ଲମ୍ବ ହୋଇ ସେ କଚୁଡ଼ି ହୋଇ ପଡ଼ିଲା ।

ତାର ଯନ୍ତ୍ରଣାକ୍ଲିଷ୍ଟ କାତର ଚିତ୍କାର ଶୁଣି ଗୋଟାଏ ଲୋକ ନିକଟବର୍ତ୍ତୀ ବୁଦା ଭିତରୁ କେଉଁଠୁ ଉଠି ଆସିଲା । ଦେଖିବାକୁ ଲୋକଟି ବେଶି ଉଚ୍ଚା ନୁହେଁ, ମଧ୍ୟମ ଧରଣର ହେବ । କିନ୍ତୁ ଆଖି ଦିଟା ଭାରି ଚକ୍‌ଚକ୍ ତାର । ଦେଖିଲେ ସ୍ପଷ୍ଟ ଜଣାପଡ଼ୁଥିଲା ଲୋକଟି ଯେମିତି ବଡ଼ ଅସ୍ଥିର, ବଡ଼ ବଚକାନ୍ତ ହୋଇ ପଡ଼ୁଛି । କିନ୍ତୁ ତାର ଓଠ ଚାରିପଟର ସେଇ କଠୋର ରେଖାଗୁଡ଼ିକ ଭିତରେ ଲାଗି ରହିଥାଏ ଗୋଟାଏ ସକରୁଣ ନରମ ସ୍ନିଗ୍ଧହାସ୍ୟ ।

ଏକାକୁଦାରେ ଲୋକଟି ଯାଇ ଝରଣା କୂଳରେ ହାଜର ହୋଇଗଲା । ଆଉ ଭିକାଖଟିକୁ ଠିକ୍ ଗୋଟିଏ ଛୋଟ ଛୁଆ ଭଳି ଦୁଇ ହାତରେ ଉଠେଇ ନେଇ ଝରଣାର ତଟ ଉପରକୁ ଟେକି ନେଇ ଆସିଲା । ଭିକାଖଟି ସେତେବେଳକୁ ଅସହ୍ୟ ଯନ୍ତ୍ରଣାରେ ଚିତ୍କାର କରୁଥାଏ । କିନ୍ତୁ ତା ଗୋଡ଼ର ସେହି ପଚା ସଡ଼ା କ୍ଷତସ୍ଥାନଟାକୁ ଚିକିତ୍ସା କଲାଭଳି କୌଣସି ଜିନିଷ ସେଠି ମିଳିବା ମୁସ୍କିଲ୍ । ତାର ବଳାଗଣ୍ଠିର ଫୁଲା କ୍ଷତଟାରୁ ରକ୍ତ ଧାର ଧାର ହୋଇ ବୋହି ଯାଉଥାଏ । ଫୁଲିଲା ଫୁଲିଲା ଆଖି ପତାରେ ତାର ଟୋପା ଟୋପା ଲୁହ ଲାଗିଥାଏ ।

ଆଗନ୍ତୁକ ବ୍ୟକ୍ତିଟି ଆଖି ଟୋଳି ଅନେଇଲା ଘୃଣଆଡ଼କୁ । ଟବଣ୍ ଛୋଷଣ, ସତର୍କ ତାର ଦୃଷ୍ଟି । ସନ୍ଧ୍ୟାର ପ୍ରଶାନ୍ତ ଘେର ନରମ ଛାଇ ଭିତରେ ସମଗ୍ର ପ୍ରକୃତି ଧୀର ଶାନ୍ତ ହୋଇ ଶୋଇଯାଇଛି । ତାପରେ ଲୋକଟି ଭିକାରୀ ପାଖକୁ ଆଗେଇ ଆସିଲା । କ୍ଷତସ୍ଥାନଟିକୁ ଟିକଏ ପରଖି ନେଇ ଝରଣାରୁ ପାଣି ଆଣି ତାକୁ ଧୋଇଦେଲା—ଠିକ୍ ଯେମିତି ମାଆ ତାର ଆହତ ଶିଶୁର ଶୁଶ୍ରୂଷା କରେ । ରକ୍ତର ଧାର କିନ୍ତୁ ବନ୍ଦ ହେଲା ନାହିଁ । ଅନବରତ ଭାବେ ବେଶ୍ ଜୋରରେ ରକ୍ତର ସୁଅ ଯେମିତି ଛୁଟି ଚାଲିଥାଏ । ଲୋକଟି ତାପରେ କିଛି ଦୂରକୁ ଚାଲିଗଲା । ଟିକଏ ନଇଁପଡ଼ି ବଣବୁଦା ଭିତରୁ କ'ଣ ଅଣ୍ଡାଳି ଅଣ୍ଡାଳି ସାଉଁଟି ଆଣିଲା । ତାପରେ ଠିଆ ହେଲା ! ଦେଖାଗଲା ହାତରେ ମେଞ୍ଚାଏ ସାଗୁଆ ପତ୍ର ଆଉ ଚେରମୂଳ ଧରି ସେ ତା'ର ଟାଣୁଆ ଟାଣୁଆ ଆଙ୍ଗୁଠିରେ ମକଚୁଛି । ସେଇଠୁ ସେଇ ପତ୍ରର ରସକୁ ଆଣି ଭିକାରୀର କ୍ଷତସ୍ଥାନରେ ବୋଳିଦେଲା । ଭିକାରୀ ପାଖରେ କୌଣସି ପରିଷ୍କାର କନା ନଥିବାରୁ ନିଜର ସେଇ ଲମ୍ବା ଶାର୍ଟଟାକୁ ଦେହରୁ ବାହାର କରି ଦେଇ ସେଥିରୁ ଖଣ୍ଡେ ରୁମାଲ ବାହାର କଲା । ବେଶ୍ ସୁନ୍ଦର ସିଲ୍କର ବଡ଼ ରୁମାଲଟିଏ ।

ଭିକାରୀ ମାନବରେ ଅନେଇ ରହିଥାଏ ଲୋକଟିକୁ । ଲୋକଟିର କିନ୍ତୁ କ୍ଷତସ୍ଥାନ ଛଡ଼ା ଅନ୍ୟ କେଉଁଠି ଦୃଷ୍ଟି ନାହିଁ । ରକ୍ତର ଧାର ଯେମିତି ଧୀରେ ଧୀରେ ବନ୍ଦ ହୋଇ ଆସିଲା ସଙ୍ଗେ ସଙ୍ଗେ ରୁମାଲରେ ସେଇଠି ଗୋଟିଏ ବ୍ୟାଣ୍ଡେଜ ସେ ବାନ୍ଧିଦେଲା । ସଫେଦ ରୁମାଲ ଭେଦକରି ବିନ୍ଦୁଟିଏ ଲୋହିତ ରକ୍ତବି ବାହାରକୁ ଦିଶିଲା ନାହିଁ । ଲୋକଟିର ମୁଖ ମଣ୍ଡଳରେ ଅସୀମ ତୃପ୍ତିର ସ୍ମିତହାସ୍ୟ ଉକୁଟି ଉଠିଲା ।

ଭିକାରୀ ଗୁଣୁ ଗୁଣୁ ହୋଇ କହିଲା, "ଅଶେଷ ଧନ୍ୟବାଦ ତୁମକୁ, ମତେ ବେଶ ଭଲ ଲାଗିଲାଣି ଏଥର ।"

ଲୋକଟି କହିଲା, "ବ୍ୟସ୍ତ ହୁଅ ନାହିଁ ଆଉ । ଏଇଥିରେ ତୁମର ଘା' ଏକଦମ ଶୁଖିଯିବ ।"

ଭିକାରୀ ଉଠିବାକୁ ଚେଷ୍ଟା କଲା । ଲୋକଟି ଅସୀମ ସହାନୁଭୂତିର ସହିତ ତାର ହାତ ହଟା ବଢ଼େଇ ଦେଇ ତାକୁ ଠିଆ ହେବାରେ ସାହାଯ୍ୟ କଲା । ଭିକାରୀ ବସ୍ତ୍ରର ଲୁଗାପଟା ସେତେବେଳକୁ ଏକଦମ୍ ଭିଜିଯାଇ

ଦେହ ସାଙ୍ଗରେ ଲାଗିଯାଇଛି । ତେଣୁ ଲୋକଟି ନିଜର ସେହି ଲମ୍ବା ଶାର୍ଟଟାକୁ ଦେଇଦେଲା ଭିକାରୀକୁ ।

ଅସୀମ ବିସ୍ମୟରେ ଭିକାରୀ ଗୁହାଁ ରହିଲା ତାରି ଆଡ଼େ । ଦେଖିଲା ଏହି ମୋଟା ଶାର୍ଟ ତଳେ ଲୋକଟି ଗୋଟିଏ ସୁନ୍ଦର ଶୁଭ୍ର ଲିନେନ୍ ସ୍କର୍ଟ୍ ପିନ୍ଧିଛି । ଲୋକଟି ଦେହରୁ ଶାର୍ଟ କାଢ଼ିଲା ବେଳେ ଭିକାରୀ ତାକୁ ତନ୍ନତନ୍ନ କରି ପରୀକ୍ଷା କରିନେଲା । ଦୁଇଟି କଥା ତା ମନ ଭିତରେ ରେଖାଙ୍କିତ ହୋଇ ରହିଗଲା । ଗୋଟିଏ ହେଉଛି ଲୋକଟିର ସେହି ଉଜ୍ଜ୍ୱଳ ଚକ୍‌ଚକ୍ ଆଖି ଯୋଡ଼ା; ଆଉଟି ହେଉଛି ତାର ମଥାର କେଶ କେଶ କୁଞ୍ଚିତ ଟପି ରଙ୍ଗର ବାଳକେଶକ ।

ଲୋକଟି ତାପରେ ଭିକାରୀକୁ ବଢ଼େଇ ଦେଲା ତାର ହାତବାଡ଼ି କ୍ଷଣକ ଆଉ ତଳେ ପଡ଼ିଥିବା ପୁଟୁଳାଟି ଉଠାଇ ଆଣିଲା । ଦେଖିଲା ବେଳକୁ ପୁଟୁଳିଟି ଖାଲି । ସେ ନିଜ ଅଣ୍ଟାରୁ କମରପଟି ଫିଟାଇଲା । ସେଇଠି ଗୋଟିଏ ଛୁରୀ ଆଉ ଗୋଟିଏ ବଡ଼ ଶିଭଲଭର ଗେଞ୍ଜା ହୋଇ ଥାଏ । ତାକୁ ଗୁଡ଼ ଦେଇ ସେ କମରପଟି ତଳୁ ବାହାର କରି ଆଣିଲା ଗୋଟାଏ ପରେ ଗୋଟାଏ ଏମିତି ଅନେକ ଗୁଡ଼ିଏ ରୂପାର ମୁଦ୍ରା । ତାରି ଭିତରୁ ମଧ୍ୟ ଗୋଟିଏ ଭେନେଜୁଲାନ ସୁନାର ଡଲାର ବାହାରି ଆସିଲା । ଲୋକଟି ଗୋଟାଏ ମୁହୂର୍ତ୍ତ ପାଇଁ ସୁନାର ଡଲାରଟିକୁ ଅନେଇଲା । ତାପରେ ଅନ୍ୟାନ୍ୟ ମୁଦ୍ରାଗୁଡ଼ିକ ସହିତ ସେଇ ସୁନାର ଡଲାରଟିକୁ ମଧ୍ୟ ସେ ଭିକାରୀର ପୁଟୁଳି ଭିତରେ ପକାଇ ଦେଲା । କହିଲା, "ଏଇଟି ମଧ୍ୟ ଚୋର, କାରଣ ସେଇଟା ତା ମନକୁ ମନ ବାହାରି ଆସିଛି ।"

ଭିକାରୀ ଲୋକଟିର ହାତ ଧରି ପକାଇ କୃତଜ୍ଞତା ପ୍ରକାଶ କରିବାକୁ ଚେଷ୍ଟା କଲା । ଏଇ ଯେଉଁ ଅର୍ଥ ସିଏ ପାଇଲା ତାହା ତା ପକ୍ଷରେ ଅମୂଲ୍ୟ ସମ୍ପଦ । ଏତେ ଦୌଲତ ତା ଭାଗ୍ୟରେ ଯୁଟିବ ବୋଲି ସେ କେବେ କଳ୍ପନା ସୁଦ୍ଧା କରି ନଥିଲା । ଦାତା ପ୍ରତି ଅସୀମ କୃତଜ୍ଞତାରେ ତାର ମନ ପ୍ରାଣ ଉଚ୍ଛଳ ହୋଇ ଉଠିଲା । ଅଶେଷ ଧନ୍ୟବାଦ ଓ କଲ୍ୟାଣ ଜଣାଇ ଭିକାରୀ ଗ୍ଲେଟେଇ ଗ୍ଲେଟେଇ ତା ଠାରୁ ବିଦାୟ ନେଇ ଆଗେଇଗଲା । ଲୋକଟି ତାରି ଆଡ଼କୁ ମୁହଁ ଫେରାଇ ପଛରୁ ଡାକି କହିଲା, "ଆଜି ମୁଁ ସିନା ତମକୁ ସାହାଯ୍ୟ କଲି । କାଲି ତମର ପାଳି ପଡ଼ିବ ମତେ ସାହାଯ୍ୟ କରିବା ପାଇଁ ।"

ସୂର୍ଯ୍ୟ କିରଣରେ ଭିକାରୀର ଆଖି ଆଉ ଝଲସି ଯାଉନାହିଁ । ସହର ବହୁ ଦୂରରେ ରହିଗଲାଣି । ଶରତର ଏହି ଧାର୍ଯ୍ୟିତ ଅପରାହ୍ଣଟି ଏପର୍ଯ୍ୟନ୍ତ ବି ଏକ କ୍ଷୀଣନରମ ଦୀପ୍ତିରେ ଉଦ୍‌ଭାସିତ ହୋଇରହିଛି । ଭିକାରୀ ଏକେଲା ଖୁସିମନରେ ଆଗେଇ ଚାଲିଲା । କ୍ଷତ ବିକ୍ଷତ ଆହତ ପାଦଟା ପ୍ରତି ତାର ଆଉ ବିଶେଷ ଦୃଷ୍ଟି ନାହିଁ ।

ପ୍ରତି ସନ୍ଧ୍ୟାରେ ଯେଉଁ ଲୋକଟି ରାସ୍ତାର କରେ କରେ ବିଜୁଳି ଖୁଣ୍ଟରେ ଦୀପ ଜାଳି ଦେଇଯାଏ ସେ ଏ ପର୍ଯ୍ୟନ୍ତ ଆସୁଛି ତାର ନିତିଦିନିଆ କାମରେ ବାହାରି ନାହିଁ । ତାର ପ୍ରଥମ ବିଜୁଳି ଖୁଣ୍ଟ ଉପରେ ନିଶୁଣିଟା ସେମିତି ଡେରିହୋଇ ଥୁଆ ହୋଇଛି । ଭିତରେ, ସୁବାଲପୁର କକ୍ଷ ଭିତରେ ସୁରାପାନ ଚୁଲୁପଟେ ଥରେ ବୁଲି ଆସିବା ସଙ୍ଗେ ସଙ୍ଗେ ନାନାଦି ମନ୍ତବ୍ୟ ଶୁଣାଯାଉଛି — ପ୍ରତ୍ୟେକଟି ମନ୍ତବ୍ୟ ଓଭେସନ୍‌ର ସାଂପ୍ରତିକ ଦୁଃସାହସିକ କାଣ୍ଡକୁ କେନ୍ଦ୍ରକରି । ଜୁଆଂଙ୍ଗାରେ ସେ କେମିତି ଜଣେ ଜମିଦାରଠୁ ସବୁ ଲୁଟିକରି ନେଇଗଲା, ଆଉ ଜଣେ ଲୋକକୁ କେମିତି ଛୁରୀରେ ଭୁଷି ମାରିଦେଲା ।

ସୁବାଲପୁର ଦ୍ୱାର କୋଣରୁ ହଟିଲା ଭିକାରୀର ଫୁଲିଲା ଫୁଲିଲା ମୁହଁଟା ଊଙ୍କି ମାରି ଉଣ୍ଡୁଛି । ତାର ବିକୃତ ପାଦଟାକୁ ଦେଖି ସମସ୍ତେ ନୀରବ ହୋଇଗଲେ । ଅନେଇ ରହିଲେ ସେ କେମିତି ହାତପାତି କାକୁତି ମିନତି ହୋଇ ଭିକ ମାଗିବ, ଆଉ ଯିଏ ଯାହା ଦେବ ତାକୁ ଆନନ୍ଦରେ ଗ୍ରହଣ କରିନେବ । କିନ୍ତୁ ସମସ୍ତଙ୍କୁ ବିସ୍ମିତ କରିଦେଇ ଭିକାରୀଟି ସିଧାସଳଖ ସୁବାଲପୁ ଭିତରକୁ ପଶିଯାଇ ମେଜ ଉପରେ ମଦଟିକମେ ପାଇଁ ବରାଦ ଦେଇ ବସିଗଲା । ଦେହଟା ତାର ସେନ୍ତ- ବେଳକୁ ଥଣ୍ଡାରେ କୋଲ ମାରିଗଲାଣି । ଶାର୍ଟ ତଳେ ତା'ର ଲୁଗାପଟା ସବୁ ଭିଜିଯାଇ ଜଡ଼ବ୍ରଡ଼ ହୋଇ ଯାଇଛି । ମଦ ଗିଲାସରେ ଓଠ ଟିକିଏ ଲଗେଇ ଦେଇ ସେ ଧୀରେ ଧୀରେ ଟୁକୁରାଏ ଶୁଖିଲା ରୁଟି ଚୋବାଇବାକୁ ଲାଗିଲା ।

ଅନ୍ୟମାନେ ତା ଉପରୁ ଦୃଷ୍ଟି ଫେରାଇ ଆଣି ପୁଣି ନିଜର ଗଳ୍ପପରେ ରତ ହେଲେ । ଶୁଣାଗଲା ବିଜୁଳିବାଲା କହୁଛି, "ତାର ଯାଦୁବିଦ୍ୟା କଥା କହୁଛଟି ? ଓଃ ସେ ଅନେକ କିଛି ଜାଣେ !"

ମଦ ଦୋକାନୀ କିନ୍ତୁ ବିଶ୍ୱାସ କଲା ନାହିଁ, କହିଲା, "ମୋର ବନ୍ଧୁକରେ ତାକୁ ଟିକିଏ ଦେଖି ନେବା ପାଇଁ ମତେ ଯଦି ଟିକିଏ ସୁଯୋଗ ମିଳିଯିବ ତାହାଲେ ତାର ଯାଦୁ ଫାଦୁ ସବୁ ଉଡ଼େଇ ଦେବି ।"

ଜଣେ ଅଳ୍ପ ବୟସ୍କ ଟାଣୁଆ ଜବାନ୍ କହିଲା, "ଓଭେଜନ୍ ଦେଖିବାକୁ କେମିତି ଟିକିଏ ଜଣା ପଡ଼ନ୍ତା କି ! ତା ମୁଣ୍ଡ ଉପରେ ପାଞ୍ଚଶହ ଟଙ୍କା ପୁରସ୍କାର ଝୁଲୁଛି । ତାକୁ ଯିଏ ଜୀଅନ୍ତା ହେଉ ବା ମୃତ ହେଉ ଧରି ଆଣି ଦେବ ସେ ପାଞ୍ଚଶହ ଟଙ୍କା ପାଇବ ବୋଲି ଘୋଷଣା କରାଯାଇଛି ।"

ତେଲ ଚିକଟା ଜଣେ ନିଗ୍ରୋ କହିଲା, "ଏତ ଅତି ସହଜ କଥା । ସେ ତ ଗୋଟାଏ କଳା ଷଣ୍ଢ ଭଳି ମଣିଷଟାଏ । କିନ୍ତୁ ତାର ଆଖି ଦିଟା ଟଙ୍କା ପରି ଚକ୍ ଚକ୍ । ମୁଣ୍ଡର ବାଳଗୁଡ଼ିକ ଟମ୍ପି ରଙ୍ଗର । ହେଲା, ଏଥର ଯା ! ପାହାଡ଼ ଭିତରେ ତାକୁ ଖୋଜି ବାହାର କରିବୁ । ତାକୁ ଧରି ଆଣିଲା ପରେ ମୋ ମଦ ଗିଲାସର ଦାମ୍‌ଟା କିନ୍ତୁ ଦେଇଦେବୁ !"

ଭିକାରୀ ବସି ବସି ପାଟି ଭିତରେ ତାର ସେଇ କାଠୁଆ ରୁଟି ଟୁକୁରାକୁ ନରମ କରିବାକୁ ଚେଷ୍ଟା କରୁଛି ଆଉ ଭାବୁଛି, "ତା ହେଲେ ଝରଣା କୂଳରେ ଯାହାକୁ ଦେଖିଲି ସେ ନିଶ୍ଚେ ଓଭେଜନ୍ । ତାକୁ ଯେ ଧରାଇ ଦେବ—ଜୀଅନ୍ତା ହେଉ ବା ମଲା ହେଉ—ସେ ପାଞ୍ଚଶ ଟଙ୍କା ପାଇବ । ଓଭେଜନ୍ ନିଶ୍ଚୟ ଯାଦୁ ଜାଣେ—ଲୋକଟା ତାର ଆତ୍ମାକୁ ଶୟତାନ ନିକଟରେ ବିକି ଦେଇଛି । ତାକୁ ଧରେଇ ଦେଲେ ତ ମତେ ଆଉ ଏମିତି ବୁଲି ବୁଲି ଭିକ ମାଗିବାକୁ ପଡ଼ନ୍ତା ନାହିଁ । ଗୋଟାଏ ଡାକୁର ଡାକ ଗୋଡ଼ଟାକୁ ଭଲ କରି ଦିଅନ୍ତି । ପାଞ୍ଚଶ ଟଙ୍କା !"

ଭିକାରୀ ହାତ ପୂରେଇଲା ପକେଟରେ—ହାତରେ ବାଜିଲା ସେଇ ସୁନାର ମୋହରଟା । ଭିକାରୀ ଭାବିଲା, "ଓଭେଜନ୍‌ର ନିଶ୍ଚୟ ଏମିତି ଅନେକ ମୋହର ଥିବ । କିନ୍ତୁ ସେ ତ ସବୁ ବାଣ୍ଟି ଦେଉଛି । ଲୋକଟା ଭାରି ଦିଲ୍‌ଦାରିଆ ଦାନୀ ପରି ଜଣା ପଡ଼ୁଛି । ନ ହେଲେ ସେ କ'ଣ ଏତେ ବଡ଼ ଡାକୁ ହୋଇଛି ମିଛଟାରେ ! ଏଇଠିକାର ଏହି ଲୋକଗୁଡ଼ାକ ତ ମତେ ଘୃଣା କରନ୍ତି । ସେମାନେ କ'ଣ ମୋ ଘା'ଟା ଧୋଇ ଦେଇଥାନ୍ତେ । ସେ ଡାକୁ ଯଦି ମୋ ପ୍ରତି ଦୟା କାହିଁକି ହେଲା ତାର ?" ଆଖି ଆଗରେ

ପୁଣି ତାର ଭାସି ଉଠିଲା ସେହି ଉଜ୍ଜ୍ୱଳ ଚକ୍ ଚକ୍ ଆଖିଦୁଇଟା, ଆଉ ତାର ସେଇ ପତଳା ପତଳା ଧୂସର ବାଳ କେରାକ, ତାର ଓଠ ଓ ଗୁମ୍ଫପଟର ସେହି କଠୋର ରେଖା ଗୁଡ଼ିକ, ତାର ଭିତରେ ତାର ସେଇ ଅସୀମ କରୁଣାଭରା ସ୍ନିଗ୍ଧ ହାସ୍ୟଟି ।

ରାସ୍ତାରେ ଶୁଣାଗଲା ଘୋଡ଼ା ଟାପୁର ଛନ୍ଦୋବଦ୍ଧ ଶବ୍ଦ । ଭିକାରୀ ବାହାରକୁ ଉଠି ଆସିଲା ଦେଖିବାକୁ ।

ରାସ୍ତାଉପରେ ଗୋଟାଏ କଳା ଧଳା ଛିଟଲା ଘୋଡ଼ା ଉପରେ ଗୋଡ଼ରେ ଲମ୍ବା ଲମ୍ବା ବୁଟ୍‌ପିନ୍ଧି କଏ ଜଣେ ଘୋଡ଼ାସବାର ଚାଲିଯାଉଛି । ସୁରାଳପୁର ପାଖ ଦେଇ । ଲୋକଟି ପୂରା କଦମ୍‌ରେ ଛୁଟିଗଲା ବେଳେ ସେ ଟିକଏ ପଛକୁ ଫେରି ଅନେଇ ଦେଲା । ଭିକାରୀ ଆଖିରେ ମିଶିଗଲା ତାର ଆଖି ଦୁଇଟା । ଗୋଟାଏ ମୁହୂର୍ତ୍ତ ପାଇଁ ଭିକାରୀର ଓଠ ଦୁଇଟା ବିସ୍ମୟରେ ବିସ୍ଫାରିତ ହୋଇଗଲା କିନ୍ତୁ ସେ ସଙ୍ଗେ ସଙ୍ଗେ ପାଟିଟା ବନ୍ଦ କରି ଚୁପ୍ ହୋଇଗଲା ।

ସୁରାଳପୁର ମାଲିକ ବି ଘୋଡ଼ା ସବାରକୁ ଦେଖିବା ପାଇଁ ବାହାରକୁ ଉଠି ଆସିଲା । କିନ୍ତୁ ସେତେବେଳକୁ ସେ କୁଆଡ଼େ ଉଭେଇ ଗଲାଣି । ସେ କହିଲା, "ଟାପୁ ଶବ୍ଦରୁ ଭାରି ବଢ଼ିଆ ଘୋଡ଼ାଟେ ପରି ଜଣାପଡ଼ୁଛି ।"

ଭିକାରୀ ମନେ ମନେ ଭାବିଲା, "ଇଏ ତ ସେଇ ଓଭେଜନ୍ ! ଠିକ୍ ଦୁଇଟା ଟଙ୍କା ଭଳି ତା ଆଖି ଦୁଇଟା ଚକ୍ ଚକ୍ କରୁଛି । ସେଇ ଦୁଇଟା ଆଖି ଯେମିତି ଦୁଇଟା ଛୁରୀ ଭଳି ଭୁଷି ଦେଇ ଯାଉଛି ।"

ବତୀବାଲା କହିଲା, "ମୁଁ ଚାଲିଲି ବତୀ ଲଗାଇବାକୁ ।"

ନିଗ୍ରୋ ଲୋକଟି ସେହି ଯୁବକକୁ ପୁଣି ଥଟ୍ଟା କରି କହିଲା, "କିରେ ଓଭେଜନ୍‌କୁ ଧରିବା ପାଇଁ ଆଉରି ଯାଇନୁ କରେ ? ହୁସିଆର, ଆଜି ରାତିରେ ହୁଏତ ତୁ ଦେଖିବୁ ସେ ଆସି ଶୋଇଛି ତୋ ଘରଭିତରେ । ତେଣୁ ଯା ଟିକଏ ଖୋଜି ଆସିବୁ ।"

ଭିକାରୀ ଭାବି ଲାଗିଲା, "ସେ୍ତ ନିଶ୍ଚୟ ସେଇ । ତା ଛଡ଼ା ଆଉ କେହିଁ ନୁହଁ । କାହାକୁ ମାରକରି ବା କାହାକୁ ଲୁଟିକରି କୁଆଡ଼େ ପଳାଉଛି । କାହାକୁ ସେ ମାରିଛି କେଜାଣି !"

ରାସ୍ତାରେ ଗୁଟିଏ ଜଣ ସଶସ୍ତ ସୈନ୍ୟ ଦୌଡ଼ ଦୌଡ଼ ଆସି ମଦଦୋକାନ ଭିତରେ ପଶିଗଲେ ଝଡ଼ ପରି । ପଚାରିଲେ, "ଦେଖିଛ, ସିଏ ଏଇବାଟେ ପଳାଇ ଯିବାର ତମେ କଏ ଦେଖିଛ ?"

"କଏ ? କାହା କଥା କହୁଛ ?"

"ଓଭେଜନ୍ ! ଓଭେଜନ୍ !"

ସମସ୍ତେ ପରସ୍ପର ଆଡ଼କୁ ଆଶ୍ଚର୍ଯ୍ୟ ହୋଇ, ଅବାକ୍ ହୋଇ ଅନାଇବାକୁ ଲାଗିଲେ । ସେମାନଙ୍କ ତୁଣ୍ଡରେ ଖାଲି "ଓଭେଜନ୍ ! ଓଭେଜନ୍ !"

ସୈନ୍ୟମାନେ ପୁଣି କହିଲେ, "ଗୋଟାଏ କଳା ଧଳା ଛିଟଛିଟିକା ଘୋଡ଼ା ଚୋରି ହୋଇ ଯାଇଛି । ସେନାପତିଙ୍କର ନଦନ ଆଉ ବୁଟ୍ ମଧ୍ୟ ଚୋରି ହୋଇ ଯାଇଛି ।"

ସମସ୍ତେ ହତବାକ୍ ହୋଇ କେବଳ ତାର ପ୍ରତିଧ୍ୱନି କଲେ, "ସେନାପତିଙ୍କର ଘୋଡ଼ା, ନଦନ, ବୁଟ୍ ସବୁ ଚୋରି ହୋଇ ଯାଇଛି !"

ସିପାହୀମାନେ ପଚାରିଲେ, "ଏଇବାଟେ ସିଏ ଯିବାର ତମେ କଏ ଦେଖିଛ ?"

ମଦ ଦୋକାନୀ କହିଲା, "ହଁ, ଏଇବାଟେ କଏ ଜଣେ ଘୋଡ଼ାରେ ବସି ଚାଲିଗଲା ।"

"ଛିଟଛିଟିକା ଘୋଡ଼ା ଉପରେ ?"

ଦୋକାନୀ ଚାହିଁଲା ଭିକାରୀ ଆଡ଼କୁ, କହିଲା, "ଅରେ ତୁ ତ ଦେଖିଥିଲୁ ସେ ଏଇବାଟେ ଗଲାବେଳେ । ଘୋଡ଼ାଟା କ'ଣ ଛିଟଛିଟିକା ଘୋଡ଼ା ?"

ଭିକାରୀ ଜବାବ ଦେଲା, "ମୁଁ ଆଉ ତାକୁ ଭଲ ରୂପେ ଦେଖି ପାରିଲି ନାହିଁ ।"

ଦୋକାନୀ ବୁଦ୍ଧି ବତେଇ ଦେଇ କହିଲା ସିପାହୀମାନଙ୍କୁ, "ସେଇଟା ତ ମାଇ ଘୋଡ଼ାଟା । ତାର ପିଲାଟାକୁ ଫିଟାଇ ଦିଅ । ଦେଖିବ ସେ ତାର ମାଆର ପାଦଚିହ୍ନ ବାରି ବାରି ତାକୁ ବାହାର କରିଦେବ ।"

ସେଇ ନିଗ୍ରୋ ଜବାନ୍‌ଟା କହିଲା, "ହଁ, ହଁ, ଠିକ୍ କଥା ? ଛୁଆଟାକୁ ଖୋଲିଦିଅ, ଆମକୁ ପାଞ୍ଚଶ ଟଙ୍କା ମିଳିଯିବ ।"

ସଙ୍ଗେ ସଙ୍ଗେ ଭିକାରୀଟି ସେଇଠୁ କୁଆଡ଼େ ଛାଇ ପରି ଖସି ଚାଲିଗଲା । ଛୋଟେଇ ଛୋଟେଇ ଯେତେ ଶୀଘ୍ର ସମ୍ଭବ ସେ ରାସ୍ତାରେ ରାସ୍ତାରେ ଆଗେଇ ଗଲା । ବତୀବାଲା ରାସ୍ତା କରେ କରେ ବତୀ ଖୁଣ୍ଟରେ ଦୀପ ଜାଳିବାରେ ବ୍ୟସ୍ତ । ସିପାହୀମାନେ ଘୋଡ଼ା ଛୁଆଟାକୁ ଫିଟେଇ ଦେଇ ତା ପଛରେ ପଛରେ ଦୌଡ଼ିଛନ୍ତି । ସେତେବେଳକୁ ଭିକାରୀ ସହର ପାରି ହୋଇ ସଡ଼କ ଉପରେ ବହୁଦୂର ଆଗେଇ ଗଲାଣି । କିଛିଦୂର ଗଲା ପରେ ବଡ଼ ସଡ଼କ ଉପରୁ ଖୁବ୍ ଛୋଟ ସଙ୍କୀର୍ଣ୍ଣ ପାହାଡ଼ୀ ରାସ୍ତାଟିଏ ଯେଉଁଠି ଅତି ବିପଜ୍ଜନକ ଭାବେ ଭାଙ୍ଗି ଯାଇଛି ସେଇଠି ସେ ଅଣ୍ଟୁ ମାଡ଼ ଆଡ଼ୁଆଳରେ ଛପି ରହିଲା ।

କିଛି ସମୟ ପରେ ସେ ଶୁଣିଲା ଘୋଡ଼ାଛୁଆଟିର ପାଦ ଶବ୍ଦ । ଜୋରରେ ଜୋରରେ ସେ ଦୌଡ଼ି ଦୌଡ଼ି ଆସୁଛି । ଦୂରରୁ ଶୁଣା ଯାଉଛି ଲୋକେ ପାଟି କରୁଛନ୍ତି । ଆହୁରି ସବୁ ଲୋକଙ୍କୁ ଡାକୁଛନ୍ତି ଚୋରକୁ ଧରିବା ପାଇଁ ସେମାନଙ୍କ ସାଙ୍ଗରେ ଆସିବାକୁ । ସେମାନେ ପାଖେଇ ପାଖେଇ ଆସୁଛନ୍ତି । ଘୋଡ଼ା ଛୁଆଟି ଆସି ମୋଡ଼ରେ ପହଞ୍ଚିଗଲା । ଭିକାରୀ ଦୁଇ ହାତରେ ତାର ବାଡ଼ିଟାକୁ ଜାବୋଡ଼ି ଧରି ଉପରକୁ ଉଠେଇଲା ଆଉ ତାର ସକଳ ଶକ୍ତି ସଞ୍ଚୟକରି ଦେଲା ପାହାରେ ଘୋଡ଼ା ଛୁଆର ଠିକ୍ ମୁଣ୍ଡ ଉପରକୁ । ଘୋଡ଼ା ଛୁଆଟା ହଠାତ୍ ରାସ୍ତା ଉପରେ ଧପ୍‌କିନା ଅଟକିଗଲା ସଂଜ୍ଞାହୀନ ହୋଇ । ତାପରେ ପୁଣି ଆଉ ଏକ ପାହାର । ଘୋଡ଼ା ଛୁଆଟା ଗଡ଼ି ଗଡ଼ି ଚାଲିଗଲା ପାହାଡ଼ ତଳକୁ ।

ଆସନ୍ନ ଅନ୍ଧକାର ଭିତରେ ବାଟ ଅଣ୍ଡାଳି ଅଣ୍ଡାଳି ପାହାଡ଼ କରର ନିଘଞ୍ଚ କଫି ବଗିଚା ଭିତରକୁ ଚାଲିଗଲା ଭିକାରୀ । ମନକୁ ମନ ଧୀରେ

ଧୀରେ ଭୁଣ୍ଟୁରୁ ଭୁଣ୍ଟୁରୁ ହେଉଥାଏ, "ଆଜ ମୋର ପାଳି ପଡ଼ିଛି ତତେ ସାହାଯ୍ୟ କରିବା ପାଇଁ, କାଲି ତୋର ପାଳି ପଡ଼ିବ ।"

ଆକାଶରେ ସଞ୍ଜତାରା ଜଳି ଉଠିଲାଣି, ସୁନାର ମୋହର ପରି ଝଲମଲ କରି ଜଳି ଉଠିଲାଣି ।



# କର୍ମବ୍ୟସ୍ତ ଦଲାଲର ରୋମାନ୍ସ

ଓ. ହେନ୍ରୀ

[ ଓ. ହେନ୍ରୀ ( ୧୮୬୨—୧୯୧୦ )—ଆଧୁନିକ କ୍ଷୁଦ୍ର ଗଳ୍ପର ଅନ୍ୟତମ ଜନକ ରୂପେ ପରିଚିତ । ଓ. ହେନ୍ରୀଙ୍କର ପ୍ରକୃତ ନାମ ହେଉଛି ଉଇଲିୟମ ସିଡ଼ନି ପୋର୍ଟର । ଆମେରିକା ଯୁକ୍ତରାଷ୍ଟ୍ରର ଉତ୍ତର କାରୋଲିନା ପ୍ରଦେଶର ଗ୍ରୀନ୍ସବରୋ ସହରରେ ତାଙ୍କର ଜନ୍ମ । ତାଙ୍କର ପିତା ଜଣେ ଡାକ୍ତର । ଜଣେ ମଧ୍ୟବିତ୍ତର ସନ୍ତାନରୂପେ ଓ. ହେନରୀଙ୍କୁ ଜୀବିକା ଅର୍ଜନ ଲାଗି ବିଭିନ୍ନ ବ୍ୟବସାୟ ପ୍ରତିଷ୍ଠାନରେ ଚାକିରି କରିବାକୁ ପଡ଼ିଥିଲା । ତେଣୁ ସାଧାରଣ ମଣିଷର ନିବିଡ଼ ସଂସର୍ଗରେ ଆସିବାର ସୁଯୋଗ ସେ ପାଇଥିଲେ । ଫଳରେ ଆମେରିକାର ଏହି ଅବହେଳିତ ସାଧାରଣ ମଣିଷମାନେ ହିଁ ତାଙ୍କର ସାହିତ୍ୟ ସୃଷ୍ଟିରେ ଜୀବନ୍ତ ଓ ପ୍ରାଣବନ୍ତ ହୋଇଛନ୍ତି । ସେମାନଙ୍କର ଖିଆଲି ମନ, ସେମାନଙ୍କର ଛୋଟ ଛୋଟ ଦୋଷ ଦୁର୍ବଳତା, ସେମାନଙ୍କର କରୁଣ ସ୍ୱପ୍ନ ଭିତର ଦେଇ ସେ ଆବିଷ୍କାର କରିଛନ୍ତି ସେମାନଙ୍କର ମାନବିକ ଆତ୍ମାକୁ ଆଉ ତା ସଙ୍ଗେ ସଙ୍ଗେ ଅନାବୃତ କରି ଦେଇଛନ୍ତି ସମସାମୟିକ ସମାଜର ବୈଷମ୍ୟକୁ । କାହାଣୀର ଅପ୍ରତ୍ୟାଶିତ ପରିଣତି ହେଉଛି ତାଙ୍କର ଶୈଳୀର ପ୍ରଧାନ ବୈଶିଷ୍ଟ୍ୟ ।

ଅର୍ଥ ତୋଷରଫ କରିଥିବାର ମିଥ୍ୟା ଅଭିଯୋଗରେ ଦଣ୍ଡିତ ହୋଇ ସେ କାରବାସ କରୁଥିବା ସମୟରେ ଏହି "ଓ. ହେନ୍ରୀ" ଛଦ୍ମ ନାମରେ ସେ ତାଙ୍କର ଗଳ୍ପ ଗୁଡିକୁ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରୁଥିଲେ । ସେହି ନାମରେ ସେ ଆଜସୁଦ୍ଧା ପରିଚିତ ସମଗ୍ର ପୃଥିବୀରେ । ]

ଦଲାଲ ବ୍ୟବସାୟୀ ହାର୍ଭେ ମ୍ୟାକ୍ସଉଏଲଙ୍କ ଦପ୍ତରର ଅତି ବିଶ୍ୱସ୍ତ କିରାଣୀ ହେଉଛନ୍ତି ପିଚେର୍ । ବ୍ୟବସାୟ ପ୍ରତିଷ୍ଠାନର ସବୁ

ଗୋପନ କାରବାରର ଯାବତୀୟ କାଗଜପତ୍ରର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ।

ଠିକ୍ ସାଢେ ନଅଟା ବେଳେ ତାଙ୍କର ମାଲିକ ଯେତେବେଳେ ଲଘୁ ଅଥଚ ଉଦ୍ଦାମ ପଦକ୍ଷେପରେ ସଙ୍ଗରେ ତାଙ୍କର ତରୁଣୀ ଷ୍ଟେନୋଗ୍ରାଫରକୁ ନେଇ ଅଫିସ ଭିତରକୁ ପଶି ଆସିଲେ, ପିଟେରଙ୍କର ସାଧାରଣତଃ ନିର୍ଲିପ୍ତ ଓ ଆବେଗହୀନ ମୁଖମଣ୍ଡଳରେ ଈଷତ୍ ଆଗ୍ରହ ଓ ବିସ୍ମୟର ଏକ କ୍ଷୀଣ ଆଭାସ ଫୁଟି ଉଠିଲା । ମ୍ୟାକ୍ସୱେଲ ଅତି ସଂକ୍ଷେପରେ "ସୁପ୍ରଭାତ, ପିଟେର" କହି ଛୁଟିଗଲେ ତାଙ୍କର ଟେବୁଲ ଆଡ଼କୁ—ମନେ ହେଲା ସତେ ଯେମିତି ସେ ପିଟେରଙ୍କ ଉପରେ କେଉଁ ଗୃଳସିବେ । ତାପରେ ସେହି ଟେବୁଲ ଉପରେ ତାଙ୍କ ପାଇଁ ଅପେକ୍ଷା କରି ରହିଥିବା ଚିଠିପତ୍ର ଓ ଟେଲିଗ୍ରାମର ସ୍ତୂପ ଭିତରେ ସେ ବୁଡ଼ାଇ ଦେଲେ ନିଜକୁ ।

ଏହି ଅଳ୍ପ ବୟସ୍କା ତରୁଣୀଟି ମାତ୍ର ବର୍ଷେ ହେଲା ତାଙ୍କ ପାଖରେ ଷ୍ଟେନୋଗ୍ରାଫର ଭାବେ କାମ କରୁଛି । ସେ ସୁନ୍ଦରୀ, କିନ୍ତୁ ତାର ଏହି ସୌନ୍ଦର୍ଯ୍ୟ ଷ୍ଟେନୋଗ୍ରାଫର ହେବା ପାଇଁ ଉପଯୁକ୍ତ ନୁହେଁ । କେଶଗୁଚ୍ଛରେ ତାର ସେହି ମନଲୋଭା କବରୀଟି ନାହିଁ । ଗଳାରେ ନାହିଁ ହାର କିମ୍ବା ପଦକ, ହାତରେ ନାହିଁ କଙ୍କଣ । ଦ୍ୱିବାଭୋଜନର ନିମନ୍ତ୍ରଣ ଗ୍ରହଣ କଲାଭଳି କୌଣସି ହାବଭାବ ବି ତା'ଠାରେ ନାହିଁ । ତାର ପରିଧାନ ଅତି ସରଳ, ନିରାଡ଼ମ୍ବର, ଦେହରେ କେବଳ ଗୋଟାଏ ଧୂସର ରଙ୍ଗର ପୋଷାକ । କିନ୍ତୁ ତା ରୂପକୁ ଠିକ୍ ଖାପ୍ ଖାଉଛି ସେହି ପୋଷାକଟି । ଉନ୍ନତ ରୁଚିର ସୁସ୍ପଷ୍ଟ ସ୍ୱାକ୍ଷର ରହିଛି ସେଥିରେ । ମଥାର ଚିକ୍କଣ କଳା ଉଷ୍ଣୀଷ ପରି ଟୋପି ଉପରେ ମରାହୋଇଛି ଶୁକପକ୍ଷୀର ଏକ ସ୍ୱର୍ଣ୍ଣ ସବୁଜ ପର । ବେଶ ଶୁଭ୍ର ସତେଜ ଦିଶୁଛି ସେ ଏଇ ସକାଳର ଆଲୁଅରେ । ତାର ସେଇ ଦୃଷ୍ଟିରେ କେମିତି ଏକ ନରମ ସଲ୍ଲଜତାର ଆବେଶ । ଆଖି ଦୁଇଟି ସ୍ୱପ୍ନରେ ଉଦ୍ଦୀପ୍ତ ହୋଇ ଉଠିଛି, କପୋଳରେ ଫୁଟି ଉଠିଛି ଅକୃତ୍ରିମ ରକ୍ତିମା । ସମଗ୍ର ମୁଖ-ମଣ୍ଡଳରେ କେମିତି ଏକ ସ୍ୱତଃସ୍ଫୂର୍ତ୍ତ ବଳଜ୍ୱଳ ପରିତୃପ୍ତ ଆନନ୍ଦର ଆବେଶ ।

ପିଟେର୍‌ଙ୍କର କୌତୂହଳୀ ମୃଦୁ ଦୃଷ୍ଟି ଏ ପର୍ଯ୍ୟନ୍ତ ବି ତା ଉପରୁ ଦୂର ହୋଇ ଯାଇନାହିଁ । ଆଜି ସକାଳର ଏଇ ତରୁଣୀର ହାବଭାବରେ କେମିତି ଗୋଟାଏ ପାର୍ଥକ୍ୟ ସେ ଲକ୍ଷ୍ୟ କରୁଛନ୍ତି । ପାର୍ଶ୍ୱବର୍ତ୍ତୀ କକ୍ଷରେ

ଯେଉଁଠି ତାର ଟେବୁଲ ରହିଛି ସେଠାକୁ ତରୁଣୀ ସିଧାସଳଖ ଚାଲି ନ ଯାଇ ବାହାର ଅଫିସ ଆଗରେ ଟିକଏ ଏପଟ ସେପଟ ହେବାକୁ ଲାଗିଲା, କେମିତି ଟିକଏ ଦୋଦୋପାଞ୍ଚ ହୋଇ, ଅସ୍ଥିର ହୋଇ। ଥରଟିଏ ପାଇଁ କେବଳ ସେ ମ୍ୟାକ୍‌ସୱେଲଙ୍କ ଟେବୁଲ୍ ପାଖ ଦେଇ ଚାଲିଗଲା। ତାର ଉପସ୍ଥିତି ସମ୍ପର୍କରେ ସେ ସଚେତନ ହୋଇ ଉଠିବା ପାଇଁ ତରୁଣୀର ଏତିକ ସାନ୍ନିଧ ଯଥେଷ୍ଟ।

କିନ୍ତୁ ଟେବୁଲ ପାଖରେ ଯିଏ ବସିଛି ସେ ଆଉ ମଣିଷ ହୋଇ ରହିନାହିଁ। ସେ ଗୋଟିଏ ଯନ୍ତ୍ର ପାଲଟି ଯାଇଛି—ନ୍ୟୁୟର୍କ ସହରର ଜଣେ କର୍ମବ୍ୟସ୍ତ ଦଲାଲ ବ୍ୟବସାୟୀ ସେ, ଚକର ଅବିରାମ ଘର୍ଘର ଘୂର୍ଣ୍ଣନ ଦ୍ୱାରା, ଫିଟି ଫିଟି ଉନ୍ମୁକ୍ତ ହୋଇ ଯାଉଥିବା ସ୍ପ୍ରିଙ୍ଗ୍ ଦ୍ୱାରା ଗତି ତାର ନିୟନ୍ତ୍ରିତ।

"ହଁ, କଣ ? କିଛି କାମ ଅଛି ?" ସୁତୀବ୍ର କଣ୍ଠରେ ପ୍ରଶ୍ନ କଲେ ମ୍ୟାକ୍‌ସୱେଲ। ତାଙ୍କର ସେଇ ଖୋଲା ଡାକଗୁଡ଼ିକ ରଙ୍ଗମଞ୍ଚର କୃତ୍ରିମ ବରଫର ସ୍ତୂପ ପରି ସେଇ ବଡ଼ ଟେବୁଲଟା ଉପରେ ପଡ଼ି ରହିଛି। ତାଙ୍କର ସେଇ ଧୂସର ଆଖିର ନୈର୍ବ୍ୟକ୍ତିକ ଆଉ ରୁକ୍ଷ ଦୃଷ୍ଟିଟା ହଠାତ୍ ଗୋଟିଏ ପଲକ ପାଇଁ ଅସହିଷ୍ଣୁ ଭାବେ ତାର ଉପରେ ଝଲସି ଉଠିଲା।

"ନାଁ, କିଛି ନାହିଁ," ଓଠରେ ଈଷତ୍ ସ୍ମିତହାସ୍ୟ ଖେଳାଇ ଦେଇ ଟେବୁଲ ପାଖରୁ ଚାଲି ଯାଉ ଯାଉ ଜବାବ ଦେଲା ତରୁଣୀ ଷ୍ଟେନୋଗ୍ରାଫର।

ତାପରେ ପିଚେରଙ୍କ ଆଡ଼କୁ ଅନାଇ ସେ ପଚାରିଲା, "ମିଷ୍ଟର ପିଚେର, ଅନ୍ୟ ଜଣେ ଷ୍ଟେନୋଗ୍ରାଫର ନିଯୁକ୍ତ କରିବା ସମ୍ପର୍କରେ ମିଷ୍ଟର ମ୍ୟାକ୍‌ସୱେଲ କାଲି ଆପଣଙ୍କୁ କ'ଣ କହୁଥିଲେ କି ?"

"ହଁ ସେ କହୁଥିଲେ," ଉତ୍ତର ଦେଲେ ପିଚେର, "ଆଉ ଜଣକୁ ଆଣିବା ପାଇଁ ସେ ମତେ କହିଛନ୍ତି। ନମୁନା ସ୍ୱରୂପ କେତେ ଜଣକୁ କାଲି ସକାଳେ ଏଠାକୁ ପଠାଇ ଦେବା ପାଇଁ ମୁଁ ଏଜେନ୍‌ସିର ଦପ୍ତରକୁ ନୋଟିସ ପଠାଇ ଦେଇଥିଲି। ଏଇନେତ ନଅଟା ପଇଁଚାଳିଶ ଆସି

ବାଜଲାଣି । କିନ୍ତୁ ଏପର୍ଯ୍ୟନ୍ତ ଗୋଟାଏ ରଙ୍ଗବେରଙ୍ଗର ଟୋପି କମ୍ପା ସମ୍ଭୁର ପଣସ ଚୁଇଙ୍ଗାମ୍ ଟିଏବି ଆସି କାହିଁ ଦେଖାଦେଲା ନାହିଁ ।"

"ତା ହେଲେ ମୁଁ ଯେମିତି କାମ କରୁଥିଲି ସେମିତି କରିଯାଉଛି ଆଜି ଜଣେ କିଏ ଆସି ମୋ ସ୍ଥାନ ପୂରଣ କରିବା ପର୍ଯ୍ୟନ୍ତ," କହିଲା ତରୁଣୀ । ଏତକ କହି ଦେଇ ସେ ଚାଲିଗଲା ତାର ଟେବୁଲ ପାଖକୁ । ତାପରେ ଶୁକପକ୍ଷୀର ସ୍ୱର୍ଣ୍ଣସବୁଜ ପରଲଗା ସେହି କଳାଟୋପିଟିକୁ ମଥାରୁ ବାହାର କରି ଦେଇ ସେ ଟାଙ୍ଗିଦେଲା ଯଥାସ୍ଥାନରେ ।

ବ୍ୟବସାୟ କାରବାରର ଠେଲା ପେଲା ଭିଡ ଭିତରେ ନ୍ୟୁୟର୍କର କର୍ମକ୍ଳାନ୍ତ ଜଣେ ଦଲାଲକୁ ଦେଖିବାର ସୁଯୋଗରୁ ଯିଏ ବଂଚିତ ହୋଇଛି ସେ କେବେ ମଣିଷ ଜାତିର ଇତିହାସ ବୁଝିବା ପାଇଁ ସମର୍ଥ ହେବ ନାହିଁ । "ଗୌରବୋଜ୍ଜ୍ୱଳ ମହାନ୍ ଜୀବନର କର୍ମମୁଖର ମୁହୂର୍ତ୍ତ" କଥା କବି ଗାଇଛନ୍ତି ସତ । କିନ୍ତୁ ଏହି ନ୍ୟୁୟର୍କ ସହରର ଦଲାଲ ଜୀବନର ମୁହୂର୍ତ୍ତଗୁଡ଼ାକ କେବଳ କର୍ମମୁଖର ନୁହଁ । ତାର ଜୀବନର ପ୍ରତିଟି ମିନିଟ୍, ପ୍ରତିଟି ସେକେଣ୍ଡ୍ ମନେହୁଏ ଯେମିତି ତାର ସେଇ ଅଫିସ ମଞ୍ଚର ଆଗରେ, ତାର ପଛରେ, ତାର ପ୍ରତିଟି ଫିତାରେ, ତାର ପ୍ରତିଟି ମୁଠାରେ ଝୁଲି ଝୁଲି ଲାଗି ରହିଛି ।

ଆଜି ଏଇ ଦିନଟି ହେଉଛି ହାର୍ଭେ-ମ୍ୟାକ୍‌ସଉଏଲଙ୍କର ସବୁଠାରୁ ବେଶି କର୍ମବ୍ୟସ୍ତ ଦିନ । ଫିତା ଗୁଳାଟା ରହିରହି ଥଙ୍ଗେଇ ଥଙ୍ଗେଇ ଟିକ-ଟିକ କରି ଉନ୍ମତ୍ତଭାବେ ଟାଇପ୍ ରାଇଟରକୁ ଫିଟି ଫିଟି ଚାଲିଯାଉଛି । ଟେବୁଲର ଟେଲିଫୋନ୍‌ଟା ଯେମିତି ଟ୍ରିଂ ଟ୍ରିଂ ଶବ୍ଦର ଏକ ଯନ୍ତ୍ରଣାମୟ ବ୍ୟାଧି ଦ୍ୱାରା ଆକ୍ରାନ୍ତ ହୋଇ ପଡ଼ିଛି । ଅଫିସ କକ୍ଷ ଭିତରେ ଲୋକଙ୍କର ଠେଲା ପେଲା ଭିଡ଼—ଅନବରତ ଯିବା ଆସିବା ଲାଗିଛି । ଲୁହାବାଡ଼ ଆରପଟୁ ଜଣେପରେ ଜଣେ ଆସି ତାଙ୍କୁ କିଏ କଣ ପଚାରି ଦେଇ ଚାଲି ଯାଉଛି—କିଏ ହସି ଦେଇ ଖୁସି ହୋଇ ପଚାରି ଗଲାଣି ତ କିଏ ଚିତ୍କାର କରି ଉଠୁଛି, ଆଉ ବା କିଏ ରାଗିମାଗି ଉଠୁଛନ୍ତି ତ କିଏ ବ୍ୟସ୍ତ ଉତ୍ତେଜିତ ହୋଇ ଉଠୁଛି । ଚପରାଶି ଗୁଡ଼ାକ କିଏ ଚିଠି ନେଇ, କିଏ ଟେଲିଗ୍ରାମ ନେଇ, କିଏ ମୌଖିକ ବାର୍ତ୍ତା ନେଇ ଅନବରତ ଯାଆ ଆସ କରୁଛନ୍ତି । ଝଡ଼ ଦ୍ୱାରା ଆକ୍ରାନ୍ତ ଜାହାଜର ନାବିକମାନଙ୍କ ପରି ଅଫିସର

କରଣୀ ଦଳ ଏପଟ ସେପଟ କୁଦାମାରି ବୁଲୁଛନ୍ତି । ଏପରିକି ପିଟେରଙ୍କର ମୁହଁଟା ବି ଟିକିଏ ସରସ, ଟିକିଏ ଜୀବନ୍ତ ହୋଇ ଉଠିଥିଲା ପରି ମନେ ହେଉଛି ।

ବାହାରେ ଷ୍ଟକ୍ ଏକ୍‌ଚେଞ୍ଜରେ ଯେମିତି ପ୍ରଳୟର ତୋଫାନ ଉଠେ, ପାହାଡର ଅତଡ଼ା ଖସେ, ତୁଷାରର ଝଡ଼ଉଠେ, ବରଫର ସ୍ରୋତ ବିଗଳିତ ହୋଇଯାଏ, ଆଗ୍ନେୟଗିରିର ଉଦ୍‌ଗୀରଣ ହୁଏ ଠିକ୍ ସେହିପରି ଦଲାଲର ଅଫିସ ଭିତରେ ମଧ୍ୟ ଏହି ଆଦିମ ପ୍ରାକୃତିକ ଆଲୋଡ଼ନର ଏକ ସଂକ୍ଷିପ୍ତ ପ୍ରତିଫଳନ ଫୁଟି ଉଠିଛି । କାନ୍ଥ ପାଖକୁ ଚୌକିଟାକୁ ଠେଲି ଦେଇ, ପାଦର ବୁଢ଼ା ଆଙ୍ଗୁଠିରେ ଭରଦେଇ ଜଣେ ନର୍ତ୍ତକ ପରି ମ୍ୟାକ୍‌ସୱେଲ ତାଙ୍କର ବ୍ୟବସାୟ କାରବାର ଚଳାଇ ଯାଉଛନ୍ତି । କେତେବେଳେ ଟାଇପ୍ ରାଇଟର ପାଖରୁ ଟେଲିଫୋନ୍ ପାଖକୁ ଦୌଡ଼ି ଯାଉଛନ୍ତି ତ ପରମୁହୂର୍ତ୍ତରେ ପୁଣି ଟେବୁଲ୍ ପାଖରୁ ଦ୍ୱାର ଆଡ଼କୁ ଦୌଡ଼ି ଯାଉଛନ୍ତି । ଅନବରତ ତାଙ୍କର ଏହି ଧାଁ ଧପଡ଼ ଲାଗିଛି—ତାଙ୍କର ପଦପାତରେ ମନେହୁଏ କେଉଁ ଏକ ଗ୍ଲୁସ୍ୟାନୃତ୍ୟର ସୁଦକ୍ଷ ବିଦୁଷକର କ୍ଷୀପ୍ରତା ଓ ଚଞ୍ଚଳତା ଯେମିତି ଲାଗି ରହିଛି ।

ଏହି କ୍ରମ ବର୍ଦ୍ଧମାନ ବିରାଟ ଜଞ୍ଜାଳ ଭିତରେ ଦଲାଲ ମ୍ୟାକ୍‌ସ-ୱେଲ ହଠାତ୍ ସଚେତନ ହୋଇ ଉଠିଲେ ଏକ ସ୍ୱର୍ଣ୍ଣାଭ କେଶଗୁଚ୍ଛର ସାନ୍ନିଧ୍ୟ ସମ୍ପର୍କରେ—ମନେ ହେଲା ଏକ ମଖମଲ ବିତାନ ତଳୁ ଯେମିତି ନଇଁ ଆସିଛି ଏହି ସ୍ୱର୍ଣ୍ଣାଭ କେଶର ଝରଣା ଓଟପକ୍ଷୀର ମେଞ୍ଚାଏ ପର ଭିତର ଦେଇ । ଦେହରେ ତାର ସିଲ୍ ମାଛର କୃତ୍ରିମ ଚମଡ଼ାର ପରିଧାନ । ଗଳାରେ ବଡ଼ ବଡ଼ ବାଦାମ ପରି ମାଳର ହାର ତଳକୁ, ଖୁବ୍ ତଳକୁ ନଇଁ ଆସିଛି, ପାଦ ଛୁଇଁ ଯାଉଛି । ଆଉ ତାର ଅଗରେ ରୂପେଲି ହୃଦୟର ପଦକଟିଏ ଝୁଲୁଛି । ଏହିସବୁ ଆନୁସଙ୍ଗିକ ସାମଗ୍ରୀର ଅଧିକାରିଣୀ ହେଉଛି ଜଣେ ଆତ୍ମସଚେତନା ତରୁଣୀ । ସେ ଠିଆ ହୋଇଛି ତାଙ୍କ ସମ୍ମୁଖରେ । ଆଉ ତା ପାଖରେ ଠିଆ ହୋଇଛନ୍ତି ପିଟେର୍ ତାର ଆବିର୍ଭାବର କାରଣ ବୁଝାଇ ଦେବା ପାଇଁ ।

"ଷ୍ଟେନୋଗ୍ରାଫର ଏଜେନ୍‌ସିରୁ ଆସିଛନ୍ତି ଏଇ ତରୁଣୀ ସେଇ ଚାକିରି ପାଇଁ", କହିଲେ ପିଟେର ।

ହାତରେ ଫୁଲାଏ କାଗଜ ଆଉ ଟେଲିଗ୍ରାମ କାଗଜ ଧରି ମ୍ୟାକ୍‌ସଉଏଲ ଟିକିଏ ଘୁରି ବସିଲେ । ବିରକ୍ତିରେ ଭ୍ରୂଲତା ତାଙ୍କର କୁଞ୍ଚିତ ହୋଇ ଉଠିଲା । ମୁହଁ ଫଣଫଣ କରି ସେ ପଚାରିଲେ, "କି ଚାକିରି ?"

"ଷ୍ଟେନୋଗ୍ରାଫର ଚାକିରୀ ପାଇଁ", କହିଲେ ପିଚେର, "ଆପଣ କାଲି ମତେ କହିଥିଲେ ସେମାନଙ୍କୁ ଖବର ଦେବାକୁ, ସକାଳେ ଏଇଠିକି ଜଣଙ୍କୁ ପଠାଇ ଦେବା ପାଇଁ ।"

"ତୁମର ମୁଣ୍ଡ ଖରାପ ହୋଇ ଗଲାଣି କି ପିଚେର !" ଚହିଁକି ଉଠିଲେ ମ୍ୟାକ୍‌ସଉଏଲ, "କିଏ କହିଲା ତୁମକୁ ମୁଁ ଏମିତି ନିର୍ଦ୍ଦେଶ ଦେଇଛି ବୋଲି ? ମିସ୍ ଲେସ୍‌ଲି ଏଇଠି ରହିବାର ବର୍ଷକ ଭିତରେ ତ ବେଶ୍ କାମ କରିଛନ୍ତି, ଖୁବ୍ ସନ୍ତୋଷଜନକ ଭାବେ କାମ କରିଛନ୍ତି । ସେ ଯେତେଦିନ ଚାହିଁବେ ଏଇଠି ରହି ପାରିବେ ଏଇ ଚାକିରୀରେ । ଏଇଠି ଆଉ ଚାକିରୀ ଖାଲି ନାହିଁ, ମ୍ୟାଡ଼ାମ୍ । ଶୁଣ, ପିଚେର୍—ଏଜେନ୍‌ସିକୁ ଯେଉଁ ଅର୍ଡ଼ର ଦିଆ ଯାଇଥିଲା ତାକୁ ରଦ୍ଦ କରିଦିଅ, ଆଉ କାହାକୁ ଏଠିକି ଡକାଅ ନାହିଁ ।"

ରୂପେଲି ହୃଦୟ ଚାଲିଗଲା ଅଫିସ ଭିତରୁ, ହଲି ଦୋହଲି, ଟମ ଟମ ହୋଇ, ଅଫିସର ଆସବାବପତ୍ର ଗୁଡ଼ାକୁ ରାଗରେ ବାଡ଼େଇ ବାଡ଼େଇ । ଗୋଟାଏ ମୁହୂର୍ତ୍ତର ଅବକାଶର ସୁଯୋଗ ନେଇ ପିଚେର କହିଲେ ତାଙ୍କ ପାଖର କିରାଣୀକୁ, "ବୁଝିଲଣି, 'ବୁଢ଼ା' ଦିନକୁ ଦିନ ଭୁଲାମନ ହୋଇଗଲାଣି, ବାହାର ଦୁନିଆଟାକୁ ସେ ଭୁଲିଯାଉଛି କ୍ରମେ କ୍ରମେ ।"

ବ୍ୟବସାୟ କାରବାରର ଗତି ଆହୁରି କ୍ଷିପ୍ର, ଆହୁରି ଭୀଷଣ ହୋଇ ଉଠିଲା । ତଳେ ସେମାନେ ଅଧ ଡଜନେ ଷ୍ଟକ୍ ଉପରେ ନିଲାମ ଡାକିବାରେ ଲାଗିଛନ୍ତି । ଏହି ସବୁ ଷ୍ଟକରେ ମ୍ୟାକ୍‌ସଉଏଲଙ୍କ ଗରାଖମାନେ ବହୁ ଟଙ୍କା ଖଟେଇଛନ୍ତି । କିଣିବା ପାଇଁ, ବିକିବା ପାଇଁ ହୁକୁମ ଆସୁଛି, ହୁକୁମ ଯାଉଛି ଖୁବ ବେଗରେ । ମ୍ୟାକ୍‌ସଉଏଲ ନିଜେ ଧରିଥିବା କେତେକ ଅଂଶର ଭାଗ୍ୟ ବିପନ୍ନ ହୋଇ ପଡ଼ୁଛି—ମଣିଷଟା ଗୋଟାଏ ଉନ୍ମୁକ୍ତ,

ସୂକ୍ଷ୍ମ ଅଥଚ ଶକ୍ତିଶାଳୀ ମେସିନ୍ ପରି କାମ କରି ଯାଉଛି । ଲୁହା ତାର ପରି ଟାଇଁ ଟାଇଁ ହୋଇ ରହିଛି ସେ । କାମ କରି ଯାଉଛି ପୂରା ଦମ୍‌ରେ, ନିର୍ଭୁଲ ଭାବେ, ଦ୍ୱିଧାହୀନ ଭାବେ, ତାର ପ୍ରତିଟି ଶବ୍ଦ ସୁନିର୍ଦ୍ଦିଷ୍ଟ, ପ୍ରତିଟି ସିଦ୍ଧାନ୍ତ ଚୂଡ଼ାନ୍ତ, ପ୍ରତିଟି କାର୍ଯ୍ୟ ଅପରିବର୍ତ୍ତନୀୟ । ଘଣ୍ଟାପରେ ଘଣ୍ଟା, ସତତ ସଜାଗ ହୋଇ ସେ କାମ କରି ଯାଉଛି । ଋଣ ଆଉ ବନ୍ଧକ, ଷ୍ଟକ୍ ଆଉ ବଣ୍ଡ୍, ଡ଼ିପୋଜିଟ୍ ଆଉ ସିକ୍ୟୁରିଟି— ସେ ଏକ ଟଙ୍କା କଉଡ଼ିର ଦୁନିଆ, ଅର୍ଥର ପୃଥିବୀ; ଏଥିରେ ମଣିଷର ଦୁନିଆ ପାଇଁ, ପ୍ରକୃତିର ପୃଥିବୀ ପାଇଁ ତିଳେ ହେଲେ ସ୍ଥାନ ନାହିଁ ।

ଦିବା ଭୋଜନର ସମୟ ସନ୍ନିକଟ ହୋଇ ଆସିବା କ୍ଷଣି ଏହି କୋଳାହଳ ଥମି ଆସିଲା ଟିକିଏ ।

ମ୍ୟାକ୍‌ସୱେଲ ତାଙ୍କ ଟେବୁଲ ପାଖରେ ଠିଆ ହୋଇ ପଡ଼ିଲେ ଟିକିଏ, ହାତ ଦୁଇଟା ଚିଠି ଆଉ ଟେଲିଗ୍ରାମରେ ଭରପୂର ହୋଇ ରହିଛି ତାଙ୍କର, ଡାହାଣ କାନ ଉପରେ ଗୁଞ୍ଜା ହୋଇଛି ଫାଉଣ୍ଟେନ ପେନ୍‌ଟିଏ । ଲଲାଟ ଉପରକୁ ନଇଁ ଆସିଛି ଅଗୋଛାଳ, ଅବିନ୍ୟସ୍ତ କେଶଗୁଚ୍ଛ । ପାର୍ଶ୍ୱର ବାତାୟନଟି ଉନ୍ମୁକ୍ତ ରହିଛି—ପ୍ରକୃତିର ପ୍ରିୟତମ ପ୍ରହରୀ ବସନ୍ତକାଳ ଧରଣୀର ଆବରଣକୁ ଟିକିଏ ଟିକିଏ ଖୋଲି ଦେଇ ଈଷତ୍ ଉଷ୍ମତାର ସ୍ପର୍ଶ ଛାଡ଼ି ଦେଉଛି ଅଫିସ କକ୍ଷ ଭିତରକୁ ।

ଉନ୍ମୁକ୍ତ ବାତାୟନ ଭିତର ଦେଇ ଧୀରେ ଧୀରେ ଭାସି ଆସୁଛି କେମିତି ଏକ ଭାଡିଗଲା ଭାସିଗଲା, ହଜିଗଲା ହଜିଗଲା ସ୍ପର୍ଶର ଗନ୍ଧ— ସୂକ୍ଷ୍ମ ସୁମଧୁର ଲାଇଲାକ୍ ଫୁଲର ଗନ୍ଧ । ଏଇ ଗନ୍ଧ ଗୋଟାଏ ମୁହୂର୍ତ୍ତ ପାଇଁ ଦଲାଲ ମ୍ୟାକ୍‌ସୱେଲଙ୍କୁ ଅସାଡ଼ ଅଚଳ କରି ଦେଇ ଚାଲିଗଲା । କାରଣ ଏଇ ସୁରଭି ହେଉଛି କୁମାରୀ ଲେସ୍‌ଲିଙ୍କର, ତାଙ୍କର ନିଜସ୍ୱ, ତାଙ୍କର ଅତି ଆପଣାର, ତାଙ୍କର କେବଳ ।

ଏହି ସୁରଭି ସଙ୍ଗେ ସଙ୍ଗେ ଭାସି ଆସିଲା କୁମାରୀ ଲେସ୍‌ଲିଙ୍କର ରୂପ, ଅତି ଜୀବନ୍ତ ଭାବେ, ଅତି ପୂର୍ଣ୍ଣମାତ୍ର ଭାବେ । ଟଙ୍କା କଉଡ଼ିର ଦୁନିଆଟା ହଠାତ୍ କ୍ଷୀଣରୁ କ୍ଷୀଣତର ହୋଇଗଲା; ସଙ୍କୁଚିତ ହୋଇ ମିଳେଇ ଗଲା ଏକ ସୁଦୂର ଦିଗନ୍ତରେ । ଆଉ କୁମାରୀ ଲେସ୍‌ଲି, ସେ ତ ସେଇ ଆର କକ୍ଷରେ; ମାତ୍ର କୋଡ଼ିଏଟି ପାହୁଣ୍ଡ ଦୂରରେ ।

"ଏଥର ନିଶ୍ଚୟ, ନିଶ୍ଚୟ ମୁଁ କହିବ" ପ୍ରାୟ ଚିତ୍କାର କରି ଉଠିଲେ ମ୍ୟାକ୍‌ସଉଏଲ । "ମୁଁ କହିବ ତାକୁ ଏଇନେ । କାହିଁକି ଯେ ଆଗରୁ ତାକୁ ମୁଁ ପଚାରି ନଥିଲି କେଜାଣି !"

ସେ ସଙ୍ଗେ ସଙ୍ଗେ ଛୁଟିଗଲେ ଭିତର ଅଫିସକୁ । ଲମ୍ଫ ଦେଇ ଠିଆ ହୋଇଗଲେ ଷ୍ଟେନୋଗ୍ରାଫରର ଡେସ୍କ ପାଖରେ ।

ତରୁଣୀ ମୁହଁ ଟେକି ଚାହିଁଲା । ଓଠ ତଳେ ତଳେ ଝଲସି ଉଠିଲା ଏକ କ୍ଷୀଣ ସ୍ମିତର ଆଭାସ । ଧୀରେ ଧୀରେ ଈଷତ୍ ଆରକ୍ତ ହୋଇ ଉଠିଲା ତାର କପୋଳ ଦୁଇଟି—ଆଖିରେ ନରମ ନିଷ୍କପଟ ଚାହାଣି ।

ତାର ଡେସ୍କ ଉପରେ ଗୋଟାଏ କହୁଣି ଭରା ଦେଇ ଆଗକୁ ନିକଏ ଝୁଙ୍କି ଆସିଲେ ମିଷ୍ଟର ମ୍ୟାକ୍‌ସଉଏଲ । ତାଙ୍କର ଦୁଇ ହାତ ମୁଠାରେ ପୁଳା ପୁଳା କାଗଜ ସେମିତି ଜକା ହୋଇ ରହିଛି । କାନ ଉପରେ ସେମିତି ଲାଗି ରହିଛି ସେଇ ଫାଉଣ୍ଟେନ ପେନ୍‌ଟି ।

ତର ତର ହୋଇ ସେ କହିବାକୁ ଆରମ୍ଭ କରିଦେଲେ, "ମିସ୍ ଲେସ୍‌ଲି, ମୋର ଆଉ ବେଶି ସମୟ ନାହିଁ, ଗୋଟିଏ ମୁହୂର୍ତ୍ତମାତ୍ର ଏଇ ମୁହୂର୍ତ୍ତରେ ମୁଁ ତୁମକୁ ଗୋଟିଏ କଥା କହିବାକୁ ଚାହେଁ । ସାଧାରଣତଃ ମଣିଷ ଯେମିତି ଭଲ ପାଏ ସେମିତି ତୁମକୁ ଭଲ ପାଇବାକୁ ମୋର ସମୟ ନାହିଁ । କିନ୍ତୁ ମୁଁ ତୁମକୁ ବାସ୍ତବିକ ଭାରି ଭଲ ପାଏ । କୁହ, ଶୀଘ୍ର କୁହ ତମେ କ'ଣ କହୁଛ, ଦୟାକରି କୁହ—ସେମାନେ ଆଉ ବସେଇ ଉଠେଇ ଦେଉ ନାହାନ୍ତି ସେଇଠି ।"

"ଊଃ, କ'ଣ କହୁଛନ୍ତି ଆପଣ ?" ଆଶ୍ଚର୍ଯ୍ୟ ହୋଇ କହିଲା ତରୁଣୀ । ସେ ଉଠି ଠିଆ ହେଲା । ଲମ୍ବା ଲମ୍ବା ଆଖି ହଟା ତାର ନିବଦ୍ଧ ହୋଇ ରହିଲା ମ୍ୟାକ୍‌ସଉଏଲଙ୍କ ମୁହଁ ଉପରେ ।

"ତୁମେ ବୁଝି ପାରୁ ନା ?" ଅସ୍ଥିର ହୋଇ ଉଠିଲେ ମିଷ୍ଟର ମ୍ୟାକ୍‌ସଉଏଲ । "ମୁଁ ତୁମକୁ ବିବାହ କରିବାକୁ ଚାହେଁ । ମୁଁ ତୁମକୁ ଭାରି ଭଲ ପାଏ ମିସ୍ ଲେସଲି । ମୁଁ ତୁମକୁ କେବଳ ଏତିକି କହିଦେବାକୁ ଚାହୁଁଥିଲି । ତେଣୁ ମୁହୂର୍ତ୍ତେ ଅବକାଶ ମିଳିବା କ୍ଷଣି ସଙ୍ଗେ

ସଙ୍ଗେ ମୁଁ ଛୁଟି ଆସିଛି ତୁମ ପାଖକୁ । ହେଇ, ଶୁଣ, ସେମାନେ ପୁଣି ମତେ ଫୋନ୍ ପାଖକୁ ଡାକିଲେଣି । ହେ, ପିଟେର୍, କହ, କହ ସେମାନଙ୍କୁ ଟିକିଏ ଅପେକ୍ଷା କରିବାକୁ । କ'ଣ କହୁଛ, ମିସ୍ ଲେସ୍ଲି, ତୁମେ ରାଜି ହେବନି ?"

ଷ୍ଟେନୋଗ୍ରାଫରର ଆଚରଣ ଅତି ଅଦ୍ଭୁତ ହୋଇ ଉଠିଲା ତାପରେ । ପ୍ରଥମେ ପ୍ରଥମେ ଅସୀମ ବିସ୍ମୟରେ ସେ ଅଭିଭୂତ ହୋଇ ଯାଇଥିଲା, ହତବାକ୍ ହୋଇ ଯାଇଥିଲା । କିନ୍ତୁ ତା ପର ମୁହୂର୍ତ୍ତରେ ଧୀରେ ଧୀରେ ଧାର ଧାର ହୋଇ ଲୁହ ବୋହି ଆସିଲା ତା ଆଖିରୁ । ମେଘର ଢ଼ିହାଡ଼ରୁ ଉଙ୍କି ମାରି ଉଠିଲା ସୂର୍ଯ୍ୟପରି ଆଖିରେ ତାର ଚହଟି ଗଲା ଏକ ସକରୁଣ ସ୍ମିତର ଝଲକ । ତାପରେ ଆସ୍ତେ ଆସ୍ତେ ତାର ଗୋଟିଏ ନରମ ବାହୁ ଉଠିଗଲା ଦଲାଲ ବ୍ୟବସାୟୀଙ୍କର ଗଳା ଉପରକୁ, ଘେରି ଗଲା ତାଙ୍କର ସେଇ ଶ୍ୱେତାଭ ଗଳାକୁ ।

"ହଁ, ମୁ ବୁଝିଲି ଏଥର," ନରମ ହୋଇ ଆସିଲା, ଆର୍ଦ୍ର ହୋଇ ଆସିଲା ତରୁଣୀର କଣ୍ଠ, "ଏଇ ନିର୍ଜୀବ, ପ୍ରାଣହୀନ ବ୍ୟବସାୟ କାରବାରଟି ତମ ମଥାରୁ ଅନ୍ୟ ସବୁ ଭାବନାକୁ ନିଃଶେଷ କରି ଦେଇଛି ଏହି ସମୟ ପାଇଁ । ମୁଁ ପ୍ରଥମେ ପ୍ରଥମେ ଭାରି ଘାବରା ହୋଇ ପଡ଼ିଥିଲି । ତୁମର କ'ଣ ମନେ ନାହିଁ, ହାର୍ଭେ ? କାଲି ରାତି ଆଠଟାବେଳେ ପରା ସେଇ ଆର ସାହିର ଛୋଟ ଗୀର୍ଜାଟିରେ ଆମର ବାହାଘର ହୋଇ ଯାଇଛି ?"



# ମୋ ଦରଜୀ

ଷ୍ଟିଫେନ୍ ଲିକକ୍

[ ଷ୍ଟିଫେନ୍ ବାଟ୍‌ଲର ଲିକକ୍ (୧୮୬୯—୧୯୪୪) କାନାଡ଼ାର ଅନ୍ୟତମ ଖ୍ୟାତନାମା ଅର୍ଥନୀତିଜ୍ଞ ଓ ହାସ୍ୟରସାତ୍ମକ ଲେଖକ । ସେ ଇଂଲଣ୍ଡରେ ଜନ୍ମଗ୍ରହଣ କରିଥିଲେ, କିନ୍ତୁ ତାଙ୍କର ପିତା ୧୮୭୬ ରେ କାନାଡ଼ାରେ ଯାଇ ବସବାସ କରିବାରୁ ସେ କାନାଡ଼ାର ନାଗରିକ ରୂପେ ନିଜର ଜୀବନ ଆରମ୍ଭ କରିଥିଲେ । ସେ ବହୁବର୍ଷ ଧରି ମଣ୍ଟ୍ରିଅଲ ସହରର ମ୍ୟାକ୍‌ଗିଲ୍ ବିଶ୍ୱବିଦ୍ୟାଳୟରେ ଅର୍ଥନୀତି ଓ ରାଜନୀତି ବିଜ୍ଞାନର ମୁଖ୍ୟ ଅଧ୍ୟାପକ ରୂପେ କାର୍ଯ୍ୟ କରୁଥିଲେ ଏବଂ ତା ସଙ୍ଗେ ସଙ୍ଗେ ସାହିତ୍ୟ ଚର୍ଚ୍ଚା ମଧ୍ୟ କରୁଥିଲେ । ସାଧାରଣ ମଣିଷର ଦୋଷ ଦୁର୍ବଳତା, ତାର ସୁଖ ଦୁଃଖ ହିଁ ତାଙ୍କର ସାହିତ୍ୟ ସାଧନାର ପ୍ରଧାନ ଅବଲମ୍ବନ । ପାଠକଙ୍କୁ ହସେଇ ହସେଇ ମଣିଷର ବେଦନାସିକ୍ତ ଆତ୍ମା ସହିତ ପରିଚୟ କରାଇ ଦେବା ତାଙ୍କର ଲେଖାର ପ୍ରଧାନ ବୈଶିଷ୍ଟ୍ୟ । ତାଙ୍କର କେତୋଟି ଉଲ୍ଲେଖ ଯୋଗ୍ୟ ସାହିତ୍ୟଗ୍ରନ୍ଥ ହେଉଛି "ଅର୍ଥହୀନ ଉପନ୍ୟାସ", "ଆଦର୍ଶ ସ୍କେଚଲିପି" ଏବଂ "ବୃହତ୍ତର ଉନ୍ମତ୍ତତାର କେତୋଟି ଜ୍ୟୋତ୍ସ୍ନା ଲୋକ ।" ]

ସବୁବେଳେ ସେ ସେଇଠି ଠିଆ ହୋଇଥାଏ—ଗତ ତିରିଶ ବର୍ଷ ଧରି ସେ ସେଇଠି ସେମିତି ଠିଆ ହୋଇ ଆସିଛି, ତାର ଦୋକାନର ସେଇ ଟିକିଏ ଭିତର ପଟେ । ବେକରେ ତାର ସେଇ କନାମପା ଫିତାଟା ଗୁଡ଼ା ହୋଇଥାଏ, ଓଠରେ ଫୁଟି ଉଠିଥାଏ ସ୍ୱାଗତକାର ଏକ କ୍ଷୀଣ ସ୍ମିତହାସ୍ୟ । ସେ ଅପେକ୍ଷା କରି ରହିଥାଏ ମତେ ସ୍ୱାଗତ କରିବା ପାଇଁ ।

"ସାର୍ଜ କନାର ଜିନିସ କିଛି ନେବେ ?" ପଚାରେ ସେ, "ନାଁ ଟୁଇଡ୍‌ର କିଛି ନେବେ ?"

ଏଇ ଦୁଇଟି ଭିତରୁ ସେ କୌଣସି ଗୋଟିକୁ ବାଛି ନେବାକୁ ପଡ଼ିବ ଆମକୁ । ତା ଛଡ଼ା ଅନ୍ୟ ଉପାୟ ନାହିଁ । ଗତ ତିରିଶ ବର୍ଷ ଧରି ଆଜି କୌଣସି କନା ଯୁଟିନି ଆମ ଭାଗ୍ୟରେ । ଏତେ ବର୍ଷର ଅଭ୍ୟାସ ଏଇନେ ଆଜି ବଦଳାଇ ଦେବା ସମ୍ଭବ ନୁହେଁ ।

"ସାର୍ଜ କନା ନିଅନ୍ତୁ", ଦରଜି ମୋର ପୁଣି କହେ, "ହଁ, ଗାଢ଼ ନୀଳ ରଙ୍ଗର ହେଲେ ଚଳିବ ନିଶ୍ଚୟ ! କ'ଣ କହୁଛନ୍ତି ?"

ହଠାତ୍ ଯେମିତି ଗୋଟାଏ ନୂଆ ଧାରଣା ତା ମୁଣ୍ଡକୁ ଯୁଟି ଯାଇଛି— ଗୋଟାଏ ଅଦ୍ଭୁତ ପ୍ରେରଣା ପରି ଏଇ ଗାଢ଼ ନୀଳ ରଙ୍ଗର ଧାରଣା ଯେମିତି ଫୁଟି ଉଠିଛି ତା ମନ ଭିତରେ, ସେମିତି ସେ କଥାଟା କହେ ଅତି ଉତ୍ସାହରେ । "ହଁ, ସେଇ ଗାଢ଼ ନୀଳଟା—ମିଷ୍ଟର ଜେନିଙ୍ଗସ୍", ( ଯେ ଭଦ୍ରଲୋକ ତାର ସହକାରୀ ) "ଦୟାକରି ସେଇ ଗାଢ଼ ନୀଳରୁ କିଛି ନେଇ ଆସ ।"

"ଆଃ", ଆଶ୍ଚର୍ଯ୍ୟ ହୋଇ ସେ କହି ଉଠେ, "ଚମତ୍କାର ହୋଇଛି କନାଟା !" ଏଇ କଥାଟାକୁ ସେ ଏମିତି ଭାବେ କହେ ସତେ ଯେମିତି ଅପଟ ସୌଭାଗ୍ୟ କ୍ରମେ ଲକ୍ଷ ଲକ୍ଷ ଜାମାପଟା ଭିତରୁ ଅତି ଆକସ୍ମିକ ଭାବେ ଏଇ କନାଟା ବାହାରି ପଡ଼ିଛି ତା ଦୋକାନରୁ ।

ଗୋଟାଏ ଆଣ୍ଠୁ ସେ ଟେକିଦିଏ ଉପରକୁ ଆଉ ତା ଉପରେ ପକାଇ ଦିଏ ସେଇ ସାର୍ଜ କନାଟା । ଆଉ ଗୋଡ଼ିଟାରେ ସେ ଠିଆହୋଇ ରହେ । ସେ ଜାଣେ ଏହି ଭଙ୍ଗୀରେ କନାଟା ଦେଖାଇଲେ କନାର ଆକର୍ଷଣକୁ କେହି ପ୍ରତିରୋଧ କରି ପାରିବ ନାହିଁ । କନାକୁ କନା ବୋଲି ପସନ୍ଦ କରିବାକୁ ହେଲେ ଦରଜିର ଗୋଟାଏ ଝୁଲନ୍ତା ଗୋଡ଼ର ବଙ୍କା ଆଣ୍ଠୁ ଉପରେ ବିଲମ୍ବିତ କନାଟାକୁ ଦେଖିବା ଦରକାର ।

ମୋ ଦରଜି ଏମିତି ଭାବେ ଗୋଟାଏ ଗୋଡ଼ ଉପରେ ଅସାଡ଼ ହୋଇ, ତନ୍ମୟ ହୋଇ ଠିଆ ହୋଇ ରହିପାରେ ଅନନ୍ତ କାଳ ପର୍ଯ୍ୟନ୍ତ ।

"ଭଲ ମାନିବତ ମତେ ?" ମୁଁ ତାକୁ ପଚାରେ ।

"ଚମତ୍କାର ମାନିବ ।" ଉତ୍ତର ଦିଏ ସେ ।

ବାସ୍ତବିକ ସେଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ ମୋର । ଗୋଟାଏ କନା ଯେ କାହିଁକି ଜଣକୁ ମାନିବ ନାହିଁ ତାର କୌଣସି ଯଥାର୍ଥ କାରଣ ମୁଁ ଏପର୍ଯ୍ୟନ୍ତ ଆବିଷ୍କାର କରିପାରି ନାହିଁ । ମୁଁ ସବୁବେଳେ ସେଇ ପ୍ରଶ୍ନଟି ପଚାରେ, କାରଣ ମୁଁ ଜାଣେ ସେ ସବୁବେଳେ ଅପେକ୍ଷାକରି ରହିଥାଏ ଏଇ ପ୍ରଶ୍ନଟି ଶୁଣିବ ବୋଲି । ଆଉ ପ୍ରଶ୍ନଟି ଶୁଣିଲେ ସେ ଖୁସି ହୁଏ । ଏସବୁ ବ୍ୟାପାରରେ ନ୍ୟାୟସମ୍ମତ ଆଦାନ ପ୍ରଦାନ ଓ ସାଲିସ ଏକାନ୍ତ ବାଞ୍ଛନୀୟ ।

"ଏଇ ରଙ୍ଗଟା ମତେ ବେଶି ଭେସରା ଦିଶିବ ନାହିଁ ତ ?" ମୁଁ ପୁଣି ପ୍ରଶ୍ନ କରେ । ଏଇ ପ୍ରଶ୍ନଟି ଶୁଣିବା ପାଇଁ ବି ତାକୁ ଭାରି ଭଲ ଲାଗେ ।

"ଆଃ, ନାଁ, ନାଁ, ମୋଟେ ନୁହଁ, ଭାରି କୋମଳ ରଙ୍ଗ ଏଇଟା । ବାସ୍ତବିକ ଆମେ ସବୁବେଳେ ଆମର ଗରାଖମାନଙ୍କୁ ଏଇ ସାର୍ଜ କିଣିବାକୁ ପରାମର୍ଶ ଦେଉ । କାରଣ ଏଇ କନାଟା ଆଦୌ ଭେସେରା ଦେଖାଯାଏ ନାହିଁ । ରଙ୍ଗଟା ଭାରି ନରମ ।"

ଜୀବନରେ ଅତି ଉତ୍କଟ ଢଙ୍ଗର ସୁଟ୍ ମୁଁ କେବେ ପିନ୍ଧିନାହିଁ । ତଥାପି ପଚାରିଦେବାଟା ନିରାପଦ ।

ତାପରେ ସେ ମୋର ମାପଚୁପ୍ ଆରମ୍ଭ କରିଦିଏ । ଗୁଣ୍ଡିଟା ଖାଲି ମାପେ, ଆଉ କିଛି ନୁହଁ । ଅନ୍ୟସବୁ ଯାଗାର ମାପ ବହୁବର୍ଷ ଆଗରୁ ନିଆ ସରିଛି । ଆଉ ଏଇ ଗୁଣ୍ଡି ମାପଟା ନିଆଯାଏ କେବଳ ମତେ ଖୁସି କରିବା ପାଇଁ, ସେ କଥା ମୁଁ ଭଲ ଭାବେ ଜାଣେ । ପ୍ରକୃତରେ ଦେଖିବାକୁ ଗଲେ ମୋର ତ ବଢ଼ିବାର ବୟସ ନାହିଁ ଏଇନେ !

"ଗୁଣ୍ଡିଟା ଆଉ ଟିକିଏ ପୂରି ଆସିଛି", ଗୁଣୁ ଗୁଣୁ ହୋଇ କହେ ମୋ ଦରଜୀ । ତାପରେ ତାର ସହକାରୀକୁ ଡାକି କହେ, "ମିଷ୍ଟର ଜେନିଙ୍ଗସ୍, ଗୁଣ୍ଡି ମାପ ଆଉ ଟିକିଏ ବଢ଼ିଛି, ଦୟାକରି ଲେଖ ଆଉ ଅଧ ଇଞ୍ଚେ ଗୁଣ୍ଡି ମାପରେ ।"

ସେ ଏକ ମନଗଢ଼ା କଥା । ଆମ ଭିତରୁ ଅତି ବନସ୍ତୀ ମଣିଷ ବି ଖୁସି ହୋଇ ଉଠିବ ତା ଗୁଣ୍ଡିର ଚଉଡ଼ା ବଢିଛି ବୋଲି ଶୁଣିଲେ ।

"ହଁ", ମୋ ଦରଜୀ ପୁଣି କହେ, ତାର ଏଇ "ହଁ" ଟାର ସେମିତି କୌଣସି ସ୍ୱତନ୍ତ୍ର ଅର୍ଥ ନଥାଏ । ଏଇ ଧରନ୍ତୁ, ଆର ମଙ୍ଗଳବାରକୁ ଦେଲେ ଚଳିବନି ? ମିଷ୍ଟର ଜେମ୍ସଙ୍ଗସ୍, ହଁ, ଆର ମଙ୍ଗଳବାରକୁ— ଟିପିରଖ ଦୟାକରି ।"

"ଆଉ ତୁମେ," ମୁଁ କହେ, "ବିଲ୍‌ଟା..." ସେ ମତେ ଆଉ କଥା ଶେଷ କରିବାକୁ ଦିଏ ନାହିଁ । ବିଲ୍ ବିଷୟରେ ସେ କିଛି କଥାବାର୍ତ୍ତା କରିବାକୁ ଚାହେଁନାହିଁ । ସେ କଥା ଉଠାଇବା ଅର୍ଥ ଆମ ଉଭୟଙ୍କ ମନରେ କଷ୍ଟ ହେବ ।

ବିଲ୍ ବିଷୟଟା ଆମେ କେବଳ ଚିଠିପତ୍ର ଦ୍ୱାରା ତୁଟାଇ ଦେଉ । ଆଉ ତା ପୁଣି ବେଶ୍ ଭଦ୍ରଭାବେ ଲେଖାଯାଏ, କାହା ମନରେ ସେମିତି କୌଣସି କଷ୍ଟ ଲାଗିବ ନାହିଁ ।

ମୋ ଦରଜୀର ଚିଠିରୁ ଜଣାପଡ଼େ ମୋ ବିଲ୍‌ର ଦାମଟା ସେ କେବେ ମୋଠୁ ଚାହାନ୍ତା ନାହିଁ ଯଦି ମଝିରେ ମଝିରେ "ଦୁର୍ଭାଗ୍ୟବଶତଃ ୟୁରୋପରୁ ଆସିଥିବା ଗୁଡ଼ାଏ ଲୁଗାପଟାର ପାର୍ଶେଲ ତାକୁ ଛଡ଼ାଇବାକୁ ପଡ଼ୁନଥାନ୍ତା ।" ଏଇ ଲୁଗାପଟାର ପାର୍ଶେଲ ତାକୁ ଛଡ଼େଇବାକୁ ପଡ଼ୁନଥିଲେ ମତେ ହୁଏତ ଟଙ୍କାଟା ତାକୁ ଆଉ କେବେ ଦେବାକୁ ପଡ଼ୁନଥାନ୍ତା ! ଏକଥା ଅବଶ୍ୟ ସତ ଯେ, ଯେତେବେଳେ ଦୁଇଟା ସୁଟ୍‌ର ଦାମ୍ ମୋ ଉପରେ ବାକି ପଡ଼ିଯାଏ ଆଉ ମୁଁ ତୃତୀୟ ସୁଟ୍‌ଟା ବରଦ କରିବାକୁ ଯାଏ ସେତେବେଳେ ଯାଇ ୟୁରୋପରୁ ଏଇ ଲୁଗାର ପାର୍ଶେଲଟା ତା ପାଖରେ ଆସି ପହଞ୍ଚିଯାଏ । ଏକଥା ମୁଁ ଲକ୍ଷ୍ୟ କରିଛି ଅନେକ ଥର । କିନ୍ତୁ ହୁଏତ ଏହା କେବଳ ଏକ ଆକସ୍ମିକ ଘଟଣା ହୋଇ ଥାଇ ପାରେ ।

ତଥାପି ଏହି ବିଲ୍ ସମ୍ପର୍କରେ ଆମେ କେବେ କଥାବାର୍ତ୍ତା ହେଉନା, ସେ ବିଷୟ ଆମ ଭିତରେ କେବେ ଉଠେ ନାହିଁ । ତା ପରିବର୍ତ୍ତେ ମୋ ଦରଜୀ ପାଣିପାଗ ବିଷୟରେ ଆଲୋଚନା କରିବାକୁ ଆରମ୍ଭ କରିଦିଏ । ସାଧାରଣଲୋକେ ସବୁବେଳେ ଏଇ ପାଣିପାଗ ବିଷୟରେ ସେମାନଙ୍କର ଏଇ ଆଳାପ ଆରମ୍ଭ କରନ୍ତି । କିନ୍ତୁ ମୁଁ ଲକ୍ଷ୍ୟ କରିଛି ଦରଜୀମାନେ ସବୁବେଳେ ଏବିଷୟ ଉତ୍‌ଥାପନ କରି ସେମାନଙ୍କର ଆଳାପ ଶେଷ କରନ୍ତି । ସୁଟ୍ ବରଦ ଦିଆସିବାପରେ ଯାଇ ସେମାନେ ଏକଥା ପକାନ୍ତି, ତା ପୂର୍ବରୁ କେବେ ନୁହେଁ ।

"ଏଇ କେତେ ଦିନ ହେଲା ପାଗଟା ଖୁବ ଭଲ ରହିଛି", ସେ କହେ । ତା ଛଡ଼ା ପାଗ ଖରାପ ହେବା କଥା ସେ କେବେ କହେ ନାହିଁ । ହୁଏତ ଗୋଟାଏ ନୂଆ ସୁଟ୍‌ର ବରାଦ ଯାଇବାଟାହିଁ ତା ପକ୍ଷରେ ଉଜ୍ଜ୍ୱଳ ସୂର୍ଯ୍ୟାଲୋକ ଭୁଲ୍ୟ ।

ତାପରେ ଆମେ ଏକାଠି ଆଗେଇ ଆସୁ ଦୋକାନର ଭିତର ପଟୁ ସାମନା ପଟକୁ, ବାହାର ଦ୍ୱାର ପାଖକୁ ।

"ଆଜ ବୋଧହୁଏ ଆଜ୍ଞ", ମୋ ଦରଜୀ କହେ, "ନୂଆ ଶାର୍ଟକନା କିଛି କିଣିବେ ନାହିଁ ?"

"ନାହିଁ, ଥାଉ, ଧନ୍ୟବାଦ !"

ଏହା ମଧ୍ୟ ସେମିତି କଥା କହିବାର ଏକ ଢଙ୍ଗ । ଗତ ତିରିଶ ବର୍ଷ ଭିତରେ ତା ପାଖରୁ ଶାର୍ଟକନା ମୁଁ କେବେ କିଣିନାହିଁ । ତଥାପି ସେହି ପ୍ରଶ୍ନ ସେ ମତେ ପଚାରେ, ସେମିତି ଖୁସି ମନରେ ସେ ପଚାରେ ଯେମିତି ସେ ପଚାରି ଥିଲା ମତେ ତିରିଶବର୍ଷ ତଳେ ପ୍ରଥମ ଥର ପାଇଁ ।

"ଆଉ କଲାର କି ଗେଞ୍ଜି ବୋଧହୁଏ କିଛି କିଣିବେ ନାହିଁ ?"
ଏ ପ୍ରଶ୍ନବି ସେମିତି ନିରର୍ଥକ ।

ମୁଁ ମୋର କଲାର ଗୁଡ଼ାକ ଅନ୍ୟଠୁ କିଣେ, ଆଉ ଗେଞ୍ଜି ମୁଁ ଜୀବନରେ କେବେ ପିନ୍ଧି ନାହିଁ ।

ଏମିତି ବେଶ୍ ବନ୍ଧୁତ୍ୱ ପୂର୍ଣ୍ଣଭାବେ କଥାବାର୍ତ୍ତା କରି କରି ଆମେ ଆଗେଇ ଆସୁ ଦ୍ୱାର ପାଖକୁ । କୌଣସି ନା କୌଣସି କାରଣ ଯୋଗୁଁ ସେ ଯଦି ଏହି ଶାର୍ଟକନା ଆଉ ଗେଞ୍ଜି କଥା ଉଠାଇବାକୁ ଭୁଲିଯାନ୍ତା ତା ହେଲେ ମତେ ଲାଗନ୍ତା ଯେମିତି ଆମ ବନ୍ଧୁତାର ଏକ ଅତି ପରିଚିତ ତନ୍ତୀ ଛିନ୍ନ ହୋଇ ଯାଇଛି ।

ଦ୍ୱାର ପାଖରେ ଆମେ ପରସ୍ପରଠୁ ବିଦାୟ ନେଉ ।

"ହେଉ ନମସ୍କାର", ସେ କହେ, "ହିଁ, ଆସନ୍ତା ମଙ୍ଗଳବାର ଦିନ ......ନମସ୍କାର ।"

× × × × ×

ଏଇ ହେଉଛି ଆମର ସମ୍ପର୍କ, କିଂବା ଏଇ ଥିଲା ଆମର ସମ୍ପର୍କ, ଆମର ଶାନ୍ତ ଅନାବିଳ ଆଳାପର ସମ୍ପର୍କ । ଏହାର ବ୍ୟତିକ୍ରମ କେବେ ହୁଏ ନାହିଁ—କେବଳ ୟୁରୋପରୁ ସେଇ ଲୁଗାପଟାର ପାର୍ଶଲଟା ପହଞ୍ଚିଗଲେ ଯାହା କିଛି ବ୍ୟତିକ୍ରମ ହୁଏ ।

ମୁଁ କହିଲି "ଥିଲା", ତା ମାନେ ଏଇ ଅଳ୍ପଦିନ ପର୍ଯ୍ୟନ୍ତ ଆମର ସେଇ ସମ୍ପର୍କ ଥିଲା ।

ଆଉ ତାପରେ ଦିନେ ମୋର ସେଇ ଅଭ୍ୟାସଗତ ଗ୍ରୀଷ୍ମକାଳୀନ ସୁଟ୍‌ଟା ବରାଦ ଦେବା ପାଇଁ ମୁଁ ସେଇ ଅତି ପରିଚିତ ଦ୍ୱାର ପାଖରେ ଯାଇ ପହଞ୍ଚି ଦେଖେତ ସେ ଆଉ ସେଇଠି ନାହିଁ । ଦୋକାନ ଭିତରେ ଲୋକେ ଅଛନ୍ତି, ଥାକ ଉପରୁ ଥାନ ଥାନ କନାପଟା ବାହାର କରି ତଳେ ଗଦାକରି ରଖୁଛନ୍ତି । ଆଉ ତା'ର ହିସାବ ଟିପୁଛନ୍ତି । ସେମାନେ ମତେ କହିଲେ ସେ ମରିଗଲାଣି । ଏହି ଅପ୍ରତ୍ୟାଶିତ ସମ୍ବାଦରେ ମୁଁ ସ୍ତମ୍ଭୀଭୂତ ହୋଇଗଲି । ମୁଁ ଭାବି ନଥିଲି ଏପରି କେବେ ଘଟିପାରେ ବୋଲି । ମୋତେ ଜଣା ପଡୁଥିଲା ସେ ଅମର...ତାର ଅମର ହୋଇ ରହିବାର କଥା । ସେମାନେ କହିଲେ ଏଇ ବ୍ୟବସାୟରେ ଧନ୍ଦି ହୋଇ ସେ ମରିଗଲା । ଏଇ ବ୍ୟବସାୟ ତାକୁ ଖାଇଲା । ମୁଁ କେବେ ଏକଥା ବିଶ୍ୱାସ କରି ପାରି ନଥାନ୍ତି । ମତେ ସବୁବେଳେ ଲାଗୁଥିଲା ତାର ଏଇ ବ୍ୟବସାୟ ଅତି ନିର୍ଜଞ୍ଜାଳ, ଅତି ନିରୁପଦ୍ରବ—ବେକରେ ଗୋଟାଏ ଫିତା ପକାଇ, କନାମାପି, ଆଣ୍ଠୁ ଉପରେ କନା ପକାଇ ଦୋକାନ ପଛପଟ ଝରକାରୁ ଆସୁଥିବା ସୂର୍ଯ୍ୟ ଆଲୁଅରେ କନାଟାକୁ ଗରାଖମାନଙ୍କୁ ଦେଖାଇବା, ଯେତ ସେମିତି କିଛି ପ୍ରାଣନିଆ କାମ ନୁହଁ । ଏମିତି କାମ କଣ ଗୋଟାଏ ମଣିଷକୁ ମାରି ଦେଇ ପାରେ ? ତଥାପି, ସେମାନେ କହିଲେ, ସେ କେମିତି ଟଳେଇ ଟଳେଇ ଯାଉଥିଲା ବର୍ଷ ପରେ ବର୍ଷ ଧରି । ସେମାନେ ମତେ କହିଲେ ଯେ, ତାର ସ୍ତ୍ରୀର ଅବସ୍ଥା ଏଥର ଭାରି ଶୋଚନୀୟ ହୋଇ ପଡ଼ିବ । ମୁଁ କେବେ କଳ୍ପନା କରି ନ ଥିଲି

ତାର ଗୋଟାଏ ସ୍ତ୍ରୀ ଥାଇପାରେ ବୋଲି । କିନ୍ତୁ ଏଇନେ ଶୁଣୁଛି, ତାର ସ୍ତ୍ରୀ ଅଛି, ତାର ଗୋଟିଏ ଝିଅବି ଅଛି । ତା ଝିଅ,ନୀଳକଣ୍ଠବର୍ତ୍ତୀ ଗୋଟିଏ ସଙ୍ଗୀତ ବିଦ୍ୟାଳୟରେ ପଢ଼େ ( ଏସବୁ କଥା ସେ ମତେ କେବେ କହି ନ ଥିଲି ) । ଆଉ ସେ ନିଜେ ମଧ୍ୟ ଭାରି ସଙ୍ଗୀତ ପ୍ରେମୀ, ସେ ଭଲ ବଂଶୀ ବଜାଏ ଆଉ ନୀଳକଣ୍ଠବର୍ତ୍ତୀ ଏକ ଗୀର୍ଜାରେବି କାମ କରେ । ତଥାପି ଏସବୁ ବିଷୟରେ ସାମାନ୍ୟତମ ଆଭାସ ବି ସେ କେବେ ଦେଇ ନ ଥିଲି ମତେ । ବାସ୍ତବିକ କହିବାକୁ ଗଲେ ଏଇ ଗତ ତିରିଶ ବର୍ଷ ଭିତରେ ଧର୍ମ ସମ୍ପର୍କରେ ଆମର କେବେ ଆଲୋଚନା ହୋଇନାହିଁ । ଧର୍ମର ଧାରଣା ସହିତ ତାର ନାମକୁ ଜଡ଼ିତ କରି କଳ୍ପନା କରିବା କୌଣସି ମତେ ସମ୍ଭବ ହୋଇନାହିଁ ମୋ ପକ୍ଷରେ ।

ଦୋକାନରୁ ବାହାରି ଚାଲି ଯାଉ ଯାଉ ମୋର ମନେ ହେଲା, ମୁଁ ଯେମିତି ଶୁଣିଲି ତାର ସେଇ କଣ୍ଠସ୍ୱର, ସେ କହୁଛି, “ଆଉ, ଶାର୍ଟ କନା କିଛି ନେବେ ନାହିଁ ଆଜି ?”

ଭାରି ଦୁଃଖ ହେଲା ମୋର ତାଠୁ କେବେ ଶାର୍ଟକନା କିଛି କିଣି ନାହିଁ ବୋଲି ।



# କାଞ୍ଚସଙ୍ଗ ପାହାଡ଼ର ଚୂଡ଼ାରେ

—ଜର ମ୍ୟୁଗ୍

[ ଚେକୋସ୍ଲୋଭାକିଆର ବିଶ୍ୱବିଖ୍ୟାତ ଚିତ୍ରଶିଳ୍ପୀ ଆଲ୍‌ଫୋନ୍‌ସ ମ୍ୟୁଗ୍‌ଙ୍କର ପୁତ୍ର ଜର ମ୍ୟୁଗ୍ ନିଜେ ମଧ୍ୟ ଜଣେ ଖ୍ୟାତନାମା ଆଧୁନିକ ଲେଖକ । ବିଗତ ମହାଯୁଦ୍ଧର ବୀଭତ୍ସ ଧ୍ୱଂସଲୀଳା ଭିତରେ ଉନ୍ମେଷିତ ହୋଇ ଉଠିଛି ତାଙ୍କର କବି ପ୍ରାଣର ପ୍ରତିଭା । ତେଣୁ ତାଙ୍କର ପ୍ରତ୍ୟେକଟି ଲେଖାରେ, ତାଙ୍କର ପ୍ରତ୍ୟେକଟି କ୍ଷୁଦ୍ର ଗଳ୍ପ, ଉପନ୍ୟାସ, ନାଟକ ଓ କବିତାରେ ଏହି ଯୁଦ୍ଧ ଯୁଗର ପ୍ରଧାନ ସମସ୍ୟା—ଧ୍ୱଂସ ଆଉ ସୃଷ୍ଟିର ସମସ୍ୟା, ଜୀବନ ଆଉ ମୃତ୍ୟୁର ସମସ୍ୟାର ସ୍ୱାକ୍ଷର ରହିଯାଇଛି । ଆଦି ଅନ୍ତହୀନ କାଳର ବିପୁଳ ବ୍ୟାପ୍ତି ଭିତରେ, ଧ୍ୱଂସ ଆଉ ସୃଷ୍ଟିର ଯୁଗ୍ମ ପ୍ରକ୍ରିୟା ଭିତରେ ମଣିଷ ଜୀବନର ମୂଲ୍ୟ ନିରୂପଣ କରିବା ପାଇଁ ସେ ପ୍ରୟାସ କରିଛନ୍ତି । ତାଙ୍କର ବୟସ ବର୍ତ୍ତମାନ ୪୯ ବର୍ଷ । ତାଙ୍କର ଦୁଇଟି ବିଖ୍ୟାତ ଉପନ୍ୟାସ ହେଉଛି—"କାଚର ପ୍ରାଚୀର" ଏବଂ "ଗୋଟିଏ ସମ୍ଭାବ୍ୟ ମୁଖ" । ]

ନିଆଁ ନିଭିଗଲାଣି । ତଥାପି ଆଗ୍ନେୟର କେତୋଟି ଭସ୍ମାବୃତ ଅଗ୍ନିର ସ୍ଫୁଲିଙ୍ଗ ଚିକ୍ ଚିକ୍ କରୁଛି ଅନ୍ଧକାର ଭିତରେ । ମନେ ହେଉଛି ସ୍ଫୁଲିଙ୍ଗ ଗୁଡ଼ାକ ଯେମିତି ନିଦ୍ରାମଗ୍ନ ଭାବେ ନିଃଶ୍ୱାସ ନେଉଛନ୍ତି । ପାହାଡ଼ ଚୂଡ଼ା ଉପରେ ସବୁ ନିସ୍ପନ୍ଦ, କେଉଁଠି କିଛି ହଲଚଲ ହେଉନାହିଁ । ଉଷୁମ ମାଟିର ବୁକୁ ଉପରୁ ଖାଲି ଭାସିଆସୁଛି ଘାସର ଗନ୍ଧ, ଛୋଟ ଛୋଟ ବଣବୁଦା ଆଉ ବଣୁଆ କୋଳର ଗନ୍ଧ । କାଉଁଲା ନିଆଁ ପାଖରେ ବସିଛନ୍ତି ଜଣେ ପୁରୁଷ । ତାଙ୍କ ପଛପଟେ ଛୋଟ କଳା ତମ୍ବୁଟିଏ । ବଡ଼ ଭାବମଗ୍ନ ହୋଇ ସେ ବସିଛନ୍ତି, କୌଣସି ଏକ ସିଦ୍ଧାନ୍ତରେ ଉପନୀତ ହୋଇପାରୁ ନାହାନ୍ତି ।

ହନସାର ସାତ ଆଠଜଣ ଶ୍ରମିକ ଅର୍ଦ୍ଧଉଲଗ୍ନ ଅବସ୍ଥାରେ ଝାଳ-ନାଳ ହୋଇ କାମ କରିଛନ୍ତି ତାଙ୍କର ତତ୍ତ୍ୱାବଧାନରେ ଏହି ପାହାଡ଼

ଉପରେ । ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟରେ ନିଯୁକ୍ତ ସେମାନେ । ପାହାଡ଼ ଚୂଡ଼ାର ବୁକୁଉପରୁ ଅଠାଳିଆ ଅଠାଳିଆ ହଳଦିଆ ମାଟି ଖୋଳି ତାକୁ ଗୋଟାଏ ଲୁହାତାରର ବଡ଼ ଚାଲୁଣିରେ ଚଳେଇ ଭଲରୂପେ ବାଛି ଦେଇଛନ୍ତି ସେମାନେ । ଚାଲୁଣି ଉପରେ ରହିଯାଇଛି ଛୋଟ ଛୋଟ ଗୋଡ଼ି, ଟୁକୁରା ଟୁକୁରା ପଥର, ଖଣ୍ଡ ଖଣ୍ଡ ଟାଣ ମାଟି । ସେସବୁ ବସ୍ତୁକୁ ନେଇ ସେମାନେ ଥୋଇଛନ୍ତି ଗୋଟାଏ ପୁରୁଣା କାଠପଟା ଉପରେ । କାଠପଟାଟା ଘାସ-ଉପରେ ପଡ଼ିଛି ଖନନ ସ୍ଥାନ ନିକଟରେ । ବଡ଼ ମନ୍ଥର, ବଡ଼ ବିରକ୍ତିକର ଏଇ କାମ । ପାଣି ଆଉ ପବନରେ ଭାସି ଆସି ଯେଉଁ ପଟୁମାଟି ଶତ ଶତ ଶତାବ୍ଦୀଧରି ଜମିରହିଛି ଏଇ ପ୍ରାଗୈତିହାସିକ ବାସସ୍ଥାନ ଉପରେ ତାକୁ ବାଛି ଅଲଗା କରିବା ବାସ୍ତବିକ ବଡ଼ କ୍ଳାନ୍ତିକର କାମ । ବେଳେ ବେଳେ ଆଦିମ ଯୁଗର କେଉଁ ଏକ ମୃଣ୍ମୟ ପାତ୍ରର ଟୁକୁରାଟିଏ କିମ୍ବା କେଉଁ ପ୍ରାଗୈତିହାସିକ ପ୍ରାଣୀର ଟୁକୁରାଏ ଅସ୍ଥି, କିମ୍ବା ଭଙ୍ଗା ହତିଆରର ଗୋଟିଏ ଟୁକୁରା ଲାଗି ରହିଯାଏ ଚାଲୁଣି ଦେହରେ । ଯେଉଁ ସବୁ ବସ୍ତୁକୁ ଦିନେ କେହି ଅତି ଅର୍ଥହୀନ ଆବର୍ଜନା ବୋଲି ଫିଙ୍ଗି ଦେଇଥିଲେ ଆଜି ତାକୁ ଅତି ମୂଲ୍ୟବାନ ବସ୍ତୁପରି ଲୋକେ ଖୋଳିତାଡ଼ି ବାହାର କରୁଛନ୍ତି ଝାଳନାଳ ହୋଇ ଅତି ଯତନରେ । ବେଳେ ବେଳେ ଅତି ଅର୍ଥହୀନ, ଅତି ହାସ୍ୟାସ୍ପଦ ବୋଲି ମନେ ହୁଏ ଏହି କାମ ଖନନରତ ଶ୍ରମିକମାନଙ୍କୁ । ସେମାନଙ୍କର ମନେ ହୁଏ ସେମାନେ ଯେଉଁ ବସ୍ତୁକୁ ଆବର୍ଜନା ବୋଲି ଫିଙ୍ଗିଦିଅନ୍ତି ଠିକ୍ ସେଇପରି ବସ୍ତୁଗୁଡ଼ାକୁ ପୁଣି ଏତେ କଷ୍ଟକରି ମାଟିଭିତରୁ ଖୋଳିତାଡ଼ି ବାହାର କରିବାରେବା ସାର୍ଥକତା କେଉଁଠି ! ଏଇ ଦୁଇଦିନ ତଳେ ସେମାନେ ମାଟିଭିତରୁ ବାହାର କରିଛନ୍ତି ଗୋଟିଏ ମୁଦ୍ରା । ହଜାର ହଜାର ବର୍ଷତଳେ କିଏ ହୁଏତ ହଜେଇ ଦେଇଥିଲା ଏଇ ମୁଦ୍ରାଟି । ଏଇନେ ସେଇଟା ଆସି ପଡ଼ିଛି ଚାଲୁଣିର ତାର ଜାଲିଉପରେ—ଶିଉଳିବୋଳା କ୍ଷୁଦ୍ର ଗୋଲକାର ବସ୍ତୁଟିଏ । କାର୍ଯ୍ୟର ବିରତି ସମୟରେ ଆଶ୍ଚର୍ଯ୍ୟ ହୋଇ ଆଲୋଚନା କରିଛନ୍ତି ସେମାନେ କିଏ ହଜେଇ ଦେଇଛି ଏଇ ମୁଦ୍ରାଟିକୁ, କେମିତି ମଣିଷ ହୋଇଥିବ ସିଏ । "ଲୋକଟା ନିଶ୍ଚୟ କେବେ ଭାବି ନ ଥିଲା," କହିଲା ଜଣେ ଖନନକାରୀ, "ଏମିତି ଗୋଟାଏ ବାଜେ ଜିନିଷ ଦିନେ ପୁଣି ପ୍ରତ୍ନତାତ୍ତ୍ୱିକ ଯାଦୁଘରର ସମ୍ପଦ ରୂପେ ସୁରକ୍ଷିତ ହୋଇ ରହିବ……"

ଖନନକାରୀମାନଙ୍କର ଏହି ଆଳାପ ମନେ ପଡ଼ିଗଲା ସେହି ଭାବମଗ୍ନ ପୁରୁଷଙ୍କର । ମନଟା ତାଙ୍କର ଦବିଗଲା ହଠାତ୍—ଗୋଟାଏ

ମୁଦ୍ରା ଶହ ଶହ ବର୍ଷଧରି ତିଷ୍ଠି ରହିଛି ଭୂଗର୍ଭରେ ଅଥଚ⋯ଆଉ ଭାବିହୁଏ ନାହିଁ, ମନଟା ଆପେ ଆପେ ଦବିଯାଏ । ସେ ହିସାବ କରିବାକୁ ଲାଗିଲେ, ମଣିଷ ଲିପି ଉଦ୍ଭାବନ କରିବା ପରଠାରୁ ଜଳସ୍ଥଳ ଆଉ ଆକାଶର ଅଧିକାରୀ ହେବାଯାଏ କେତେ ବର୍ଷ ଲାଗି ଯାଇଥିବ ତାକୁ ? ଛଅହଜାର ବର୍ଷ ? ସାତ ହଜାର ? ଏଇ ଧରାପୃଷ୍ଠରେ ମଣିଷ ଆଉ ଯେଉଁ ଲକ୍ଷ ଲକ୍ଷ ବର୍ଷଧରି ତିଷ୍ଠି ରହିବ ତା ତୁଳନାରେ ଏଇ ଛଅ ସାତ ହଜାର ବର୍ଷତ କିଛି ନୁହଁ । ଗୋଟାଏ ମୁହୂର୍ତ୍ତ ମାତ୍ର । ତାଙ୍କ ମନର ଆଖି ଆଗରେ ଭାସିଉଠିଲା ଖଣ୍ଡେ ଗୋଲାପୀ କାଗଜରେ ଲାଜକୁଳୀ ଲତାର ଫୁଲର ଛବିର ଆବେଷ୍ଟନୀ ଭିତରେ ଲେଖା ହୋଇଛି—"ଅତି ଆନନ୍ଦର ସହିତ ଆମେ ଘୋଷଣା କରୁଛୁ ଯେ, ଆଜ ଜୁନ ପହିଲା ୨୦୦୯୫୭ ଖ୍ରୀଷ୍ଟାବ୍ଦରେ ଆମର ଗୋଟିଏ ପୁତ୍ର ସନ୍ତାନ ଜନ୍ମ ହୋଇଛି⋯"

ସେ ଆଉ କଳ୍ପନା କରିପାରିଲେ ନାହିଁ । ଅତି ବିସ୍ୱାଦକର ବୋଧ ହେଲା ଏଇ ଧାରଣାଟା ତାଙ୍କୁ । ତଳୁ ଶୁଖିଲା ଡାଙ୍ଗ ଖଣ୍ଡେ ଉଠାଇ ନେଇ ସେ ଉଝାରି ଦେଲେ ନିଭି ନିଭି ଆସୁଥିବା ନିଆଁର ଟିକୁରିଗୁଡ଼ାକୁ । ମୁହୂର୍ତ୍ତକ ପାଇଁ ହଠାତ୍ ଉଦ୍ଦୀପିତ ହୋଇ ଉଠିଲା ଭସ୍ମସ୍ତୂପ । ଅଗ୍ନିର ରେଖାଟି ରୁଜୁ ହୋଇ ଚଢ଼ିଗଲା ଖଣ୍ଡେ ଦରପୋଡ଼ା କାଠ ଦେହରେ, ତାପରେ ସଙ୍ଗେ ସଙ୍ଗେ ନିଷ୍ପ୍ରଭ ହୋଇ ନିର୍ବାପିତ ହୋଇଗଲା । ପୁଣି ଚତୁର୍ଦ୍ଦିଗରୁ ଘୋଟି ଆସିଲା ନୀରବ, ନିସ୍ତବ୍ଧ ବିଷାଦମୟ ରାତିର ଅନ୍ଧକାର ।

ଏଇ ପାହାଡ଼ ଚୂଡ଼ାରେ ଗଛଟିଏ ବି କେବେ ଉଠିନାହିଁ । ନଗ୍ନ, ଆବରଣହୀନ ତାର ବୁକୁ । ମଝିରେ ମଝିରେ ଶୀର୍ଣ୍ଣ ଦୁବ୍ବାଟିଏ କେବଳ କେଉଁଠି କେଉଁଠି ମୁଣ୍ଡଟେକି ଉଠିଛି । ଆଉ ଟିକିଏ ତଳେ ବିକ୍ଷିପ୍ତ, ନିଃସଙ୍ଗ କେତୋଟି ଟେଙ୍ଗ ଟେଙ୍ଗ କୋଳିବୁଦା । ତଥାପି ଏହି ପାହାଡ଼ ଉପରେ ଦିନେ ମଣିଷ ବାସ କରୁଥିଲା । କିନ୍ତୁ ଏଇ ପାହାଡ଼ର ବୁକୁ ନିଜର ପରିବେଶ ଅପେକ୍ଷା ଆଜି ଆହୁରି ପ୍ରାଚୀନ, ଆହୁରି ଆଦିମ ପରି ମନେ ହେଉଛି—ଆହୁରି ଅବସନ୍ନ, ଆହୁରି ଅନୁର୍ବର ମଧ୍ୟ ମନେ ହେଉଛି⋯⋯

ମାଟି ଭିତରୁ ଯେଉଁ ଧୂସର ଧାରୁଆ ପଥରଟି ବାହାରି ଆସିଛି ତାର ଉପରେ ପକ୍ଷୀଟିଏ କେତେବେଳେ କେମିତି କେଉଁଠୁ ଉଡ଼ି ଆସି

ବସିଯାଏ ଆଉ ଧୀରେ ଧୀରେ ଗାଇଉଠେ ତାର ଅବୋଧ ସଙ୍ଗୀତ । କିନ୍ତୁ ସେ ସ୍ଥିରହୋଇ ବସି ରହେ ନାହିଁ ସେଇଠି । ଏପଟ ସେପଟ ଟିକିଏ ଡେଇଁ ଡେଇଁ ଡେଣା ଝାଡ଼ି ସେ ପୁଣି ଉଡ଼ିଯାଏ କେତୋଟି ମୁହୂର୍ତ୍ତ ପରେ ସୁଦୂର ଆକାଶର ନୀଳିମା ଭିତରକୁ । ତେଣୁ ଏହି ପକ୍ଷୀଟିକୁ ଦେଖିଲେ ମନେ ହୁଏ ସେ ଯେମିତି ଆକସ୍ମିକ ଭାବେ କେଉଁ ଏକ ଅନାଗତ ଯୁଗରୁ ସ୍ଥାନାନ୍ତରିତ ହୋଇ ଆସିଛି । ଆଉ ତେଣୁ ଚରିତର ହୋଇ ଫେରିଯାଉଛି ବର୍ତ୍ତମାନର ଯୁଗକୁ ।

ଏଇନେ ରାତିର ଘନ ଅନ୍ଧକାର ଘୋଟି ଆସିଲାଣି ଚତୁର୍ଦ୍ଦିଗରୁ । କେଉଁଠି ଆଉ କିଛି ଦେଖା ଯାଉନାହିଁ—ଉପତ୍ୟକାର ସେଇ ଚଲାପଥ ନୁହଁନ୍ତି, ପାହାଡ଼ ତଳର ସେଇ ଛୋଟ ଛୋଟ କୁଡ଼ିଆଗୁଡ଼ିକ ନୁହଁ । ପାହାଡ଼ ବୁକୁର ସେଇ ଛୋଟ ଛୋଟ ବୁଦାଗୁଡ଼ିକ ବି ଛପିଗଲାଣି କେଉଁଠି । ଚତୁର୍ଦ୍ଦିଗରେ ଖାଲି ସେଇ ଅନନ୍ତ ବିସ୍ତୃତ ତାରାଭରା କୃଷ୍ଣନୀଳ ଆକାଶର ବ୍ୟାପ୍ତି । ଆଉ ତାରିଭିତରେ ସେଇ ନିଃସଙ୍ଗ ପାହାଡ଼ ଚୂଡ଼ାଟି, ମାଟିର ଅନ୍ଧକାର ଭିତରୁ ଯେମିତି ମୁଣ୍ଡଟେକି ଉଠିଛି ଆଉ ତାକୁଇ ଯେମିତି କେନ୍ଦ୍ରକରି ଘୁରିବୁଲୁଛି ଏଇ ପୃଥିବୀ ଆଉ ଏଇ ଆକାଶ ।

ପ୍ରତ୍ୟୁଷ ଠିକକରି ପାରୁନାହାନ୍ତି ସେ ନିଜ ଆସ୍ଥାନରୁ ଉଠି ତମ୍ବୁ ଭିତରକୁ ଯିବେ କି ନାହିଁ । ସେଇ ତମ୍ବୁ ଭିତରେ ପ୍ରତୀକ୍ଷାକରି ରହିଛି ତାଙ୍କର ପ୍ରେୟସୀ । ସେ କିଛି ଠିକ୍ କରିପାରୁ ନାହାନ୍ତି, ତାଙ୍କର ମସ୍ତିଷ୍କ ଭିତରେ ଖାଲି ଝୁଲୁରି ଝୁଲୁରି ଅଗଣିତ ଆବେଗ ଆଉ ଭାବନାର କୋଳାହଳ । ପ୍ରତିଟି ଆବେଗ, ପ୍ରତିଟି ଭାବନା ତାଙ୍କର ଅନ୍ତରର ଶୂନ୍ୟତାକୁ ଆହୁରି ଶୂନ୍ୟକରି ଦେଉଛି, ତାଙ୍କର ମନକୁ ଆହୁରି ଅନିଶ୍ଚିତ କରି ଦେଉଛି, ଆହୁରି ଅସ୍ଥିରକରି ଦେଉଛି ।

ହଠାତ୍ ତାଙ୍କୁ ଲାଗିଲା ତମ୍ବୁଭିତରେ କ'ଣ ଯେମିତି ହଲଚଲ ହେଲା··· ··· କାନପାରି ସେ ଶୁଣିଲେ କିଛି ସମୟ । କିନ୍ତୁ କୌଣସି ଶବ୍ଦ ତାଙ୍କ କାନରେ ପଡ଼ିଲା ନାହିଁ । ନିଜ ପ୍ରେୟସୀର ନିୟମିତ ଶ୍ୱାସ ପ୍ରଶ୍ୱାସର ଶବ୍ଦ ବି ଶୁଭାଗଲା ନାହିଁ । ହୁଏତ ସେ ଶୋଇଛି, ଶୋଇ ଶୋଇ ଅନେଇ ରହିଛି ଅନ୍ଧକାରର ଶୂନ୍ୟତା ଭିତରକୁ, ତାର ହାତ ଦିଟା ଲମ୍ବ ହୋଇ ପଡ଼ିରହିଛି ନିସ୍ପନ୍ଦ ଭାବେ ତାର ଦେହ କରେ କରେ, ଗୋଡ଼ ଦିଟା ବଗୁଡ଼ି ହୋଇ ପଡ଼ିଛି, ସେଇ ଶୁଭ୍ର ନିଷ୍କଳ ଗୋଡ଼ ଦିଟା ତାର··· କିନ୍ତୁ ସେଇ

ମୁହୂର୍ତ୍ତରେ ତାଙ୍କର ପ୍ରେୟସୀର ମୁହଁଟା ବି ତାଙ୍କର କାହିଁକି ମନେପଡ଼ିଲା ନାହିଁ । ଯେତେ ଚେଷ୍ଟା କଲେ ବି ସେ କଳ୍ପନା କରିପାରିଲେ ନାହିଁ ତାଙ୍କର ପ୍ରେୟସୀର ରୂପଟାକୁ । ଝାପସା ଝାପସା ଆକାରହୀନ ଗୋଟାଏ ଛାଇ ଖାଲି ଭାସି ଉଠିଲା ତାଙ୍କର ଆଖି ଆଗରେ—ପ୍ରେୟସୀର ଆଖି ଦିଟାବି ଫୁଟି ଉଠିଲା ନାହିଁ ତାଙ୍କର ମନର ଆଇନାରେ, ସେଇ ଆଖି ପରିବର୍ତ୍ତେ କେବଳ ଦିଟା କଳା କଳା ଗର୍ତ୍ତର ଛାଇ ଖାଲି ନାଚିଉଠିଲା । ନାଁ, ଅଯଥା କଳ୍ପନାକରି ଆଉ କିଛି ଲାଭ ନାହିଁ । କୌଣସିଥିରେ କିଛି ଲାଭ ନାହିଁ । ସବୁ ଅର୍ଥହୀନ । ଚାରିଆଡ଼େ, ମଥାଉପରେ, ଆଖି ଆଗରେ ଖାଲି ଆକାଶ ଆଉ ଆକାଶ—ହଜାର ହଜାର ଜାହାଜ ଯେମିତି ଘନ ତମିର ଭିତରେ ଆଲୋକର ଆଖି ମିଟିମିଟି କରି ଭାସି ଭାସି ଚାଲିଯାଉଛି କେଉଁ ଏକ ଅନ୍ତହୀନ ଶୂନ୍ୟତା ଭିତରକୁ······ଆଉ ଏଇ ପୃଥିବୀଟା, ତାଙ୍କର ମନେ ହେଲା, ଯେମିତି ଏକ ଆଲୋକହୀନ ତରଣୀ, ଧୀରେ ଧୀରେ ଭାସି ଭାସି ଚାଲିଛି ଏକ ଲକ୍ଷ୍ୟହୀନ ସରଣୀରେ, ଏକ ବନ୍ଦରହୀନ ସାଗର ଭିତରେ ସେମାନଙ୍କୁ କୋଳରେ ନେଇ । ପୁରୁଷ ପୁଣି ଥରେ ଚେଷ୍ଟାକଲେ ଭାବିବାକୁ । କିନ୍ତୁ ଠିକ୍‌କରି ପାରିଲେ ନାହିଁ ସେ ସେଇଠୁ ଉଠି ପାରିବେ କି ନାହିଁ, ଉଠିଯାଇ ସେଇ କ୍ଷୁଦ୍ର ବାୟୁହୀନ ତମ୍ବୁ ଭିତରେ ପ୍ରବେଶ କରି ପାରିବେ କି ନାହିଁ । ଭିଜା ଭିଜା ଅଦୃଶ୍ୟ ଦୁଇଟା ହାତ ଲମ୍ବି ଆସିବ ତାଙ୍କ ଆଡ଼କୁ । ପୁରୁଷ ଶିହରି ଉଠିଲେ । ଶୁଖିଲା ଡାଙ୍ଗଟାରେ ପୁଣି ଉଖାରି ଦେଲେ ନିଭନ୍ତ ଭସ୍ମସ୍ତୂପକୁ । ହଠାତ୍ ତାଙ୍କର ମନେ ପଡ଼ିଗଲା ସେଇ କଙ୍କାଳଟାର କଥା । ନାରୀର କଙ୍କାଳ । ସେ ଦିନ ଅପରାହ୍ନରେ ଭୂଗର୍ଭରୁ ସେମାନେ ଆବିଷ୍କାର କରିଛନ୍ତି ସେଇ ନିଖୁଣ କଙ୍କାଳକୁ ।

ଠିକ୍ ମଧ୍ୟାହ୍ନ ପରେ ପରେ ଖନନରତ ଶ୍ରମିକମାନେ ଦେଖିଲେ ଭିଜା ଭିଜା କଳାମାଟି ଭିତରେ ଗୋଟାଏ ଦୀର୍ଘ କୃଷ୍ଣାଭ ବସ୍ତୁ । ଧୀରେ ଧୀରେ ସେମାନେ ପୋଛି ନେଲେ ଉପରର ମାଟିତକ । ମାଟିର ଆବରଣ ଉଠିଗଲା ପରେ ଶ୍ରମିକମାନେ ଆଣୁ ମାଡ଼ି ସଫା କରିବାକୁ ଲାଗିଲେ ସେଇ ବସ୍ତୁଟିର ଖପୁରି, ପଞ୍ଜରହାଡ଼, ଗଣ୍ଠି ଆଉ ଲମ୍ବା ଲମ୍ବା ଅସ୍ଥିଗୁଡ଼ାକୁ । ବେଳ ବୁଡ଼ି ଆସିଲା ବେଳକୁ ସେମାନଙ୍କର କାମ ପ୍ରାୟ ଶେଷ ହେଲା । ଅବଶେଷରେ ଖନନ ପୀଠରେ ସେଇ ଚତୁଷ୍କୋଣ ଗର୍ତ୍ତ ଭିତରେ ଅକ୍ଷତ ଅବସ୍ଥାରେ ସେମାନେ ଶୁଆଇ ଦେଲେ ଗୋଟିଏ ନାରୀର କଙ୍କାଳ । ନାରୀର

ବୟସ ଅନ୍ଦାଜ ତିରିଶ ବର୍ଷ ହେବ । ସେଇ କଙ୍କାଳର ଅସ୍ଥିଳ ବାହୁରେ ଏ ପର୍ଯ୍ୟନ୍ତ ବି ଲଗି ରହିଛି କେତୋଟି କଙ୍କଣ ଆଉ ତାର ଖପୁରିରେ ଦୁଇପଟେ ଦୁଇଟି କର୍ଣ୍ଣଫୁଲ ।

ବଡ଼ ଅପ୍ରତ୍ୟାଶିତ, ବଡ଼ ରୋମାଞ୍ଚକର ଏହି ଆବିଷ୍କାର । କଙ୍କାଳ ପାଖରେ ଆଣ୍ଠୁ ମାଡ଼ି ବସିପଡ଼ି ବହୁ ସମୟ ଧରି ସେ ସଫା କରିଛନ୍ତି ତାର ବସ୍ତି ଗହ୍ୱରର ଅସ୍ଥିଟାକୁ । ତାଙ୍କର ପୃଷ୍ଠପଟେ ପ୍ରଚଣ୍ଡ ରୌଦ୍ର ତାପରେ ଜଳି ପୋଡ଼ି ଯାଇଛି ଶ୍ୟାମଳ ଦୁର୍ବାଦଳ, ପବନରେ ଭାସି ଆସିଛି ଶୁଷ୍କପତ୍ରର ଗନ୍ଧ ଆଉ ତାଜା ମାଟିର ଗନ୍ଧ······କିନ୍ତୁ କୁଣ୍ଠିତତାର କିବା ମୃତ୍ୟୁର କୌଣସି ଆଭାସ ନାହିଁ ଏ ସବୁ ଥିରେ । ନୀରବରେ କାମ କରି ଯାଇଛନ୍ତି ଶ୍ରମିକମାନେ । ସେମାନଙ୍କୁ ଲାଗିଛି ସେମାନେ ଯେମିତି ମାଟି ତଳେ ଶହଶହ ବର୍ଷ ଧରି ବନ୍ଦି ରହିଥିବା ଗୋଟିଏ ତରୁଣୀକୁ ଉଦ୍ଧାର କରୁଛନ୍ତି । ସେଇ ତ୍ରାଣ କାର୍ଯ୍ୟର ଉତ୍ତେଜନାରେ ଉଦ୍ଦାମ ହୋଇ ଉଠିଛନ୍ତି ସେମାନେ । ତା ପରେ କିଏ ଜଣେ ପଚାରିଛି ମାଟି ତଳେ କେତେକାଳ ମଣିଷର ଅସ୍ଥି ବଞ୍ଚି ପାରେ ? ମୃତ୍ତିକାର ଗଠନ ପ୍ରଣାଳୀ, ତାର କ୍ଷୟ ପ୍ରକ୍ରିୟା ଇତ୍ୟାଦି ବିଷୟ ସମ୍ପର୍କରେ ତା ପରେ ସେମାନଙ୍କ ମଧ୍ୟରେ ଆଲୋଚନା ହୋଇଛି । କିନ୍ତୁ ସମସ୍ତେ ମନେ ମନେ ବୁଝିଛନ୍ତି ମାଟିତଳେ ମଣିଷର ଦେହକୁ କଙ୍କାଳ ପାଲଟିବା ପାଇଁ ମାତ୍ର କେତୋଟି ବର୍ଷ ପ୍ରୟୋଜନ । ତା ପରେ ସେଇ କଙ୍କାଳ ସେମିତି ରହିଯାଏ ଅକ୍ଷତ ହୋଇ, ଅବିକୃତ ହୋଇ ଚିରଦିନ ପାଇଁ । ସେମିତି ଅକ୍ଷତ ଅବସ୍ଥାରେ ଏଇନେ ସେଇ କଙ୍କାଳଟି ପଡ଼ି ରହିଛି ସେମାନଙ୍କ ଆଗରେ······ଏଇ ପାଣି, ଏଇ ପବନ, ଏଇ ମାଟି ଆଉ ଏଇ ପଚି ସଢ଼ା ଗଛ ପତ୍ରରେ ଗଢ଼ା ସେଇ କଙ୍କାଳ । ରାତ୍ରିର ଘନ ଅନ୍ଧକାର ଘୋଟି ଆସିବା ପୂର୍ବରୁ ସେମାନେ ସେଇ କଙ୍କାଳକୁ ଆବୃତ କରିଦେଲେ କାଗଜ ପଟାରେ, ତାକୁ ରାତ୍ରିର ଶିଶିରପାତର କବଳରୁ ରକ୍ଷା କରିବା ପାଇଁ ।

ସନ୍ଧ୍ୟା ଛଅଟା । କାମ ଦାମ ଶେଷକରି ଖନନକାରୀମାନେ ଚାଲିଗଲେ ନିଜ ନିଜର ଆଶ୍ରୟ ସ୍ଥଳକୁ । ସାଢ଼େ ଛଅଟା ବେଳକୁ ନିଜ କାର୍ଯ୍ୟର ବିବରଣୀ ଲେଖିସାରି ସେ ବାହାରିଲେ ସେଇ ସର୍ପିଳ ସରଣୀରେ ଦୂର ରାଜପଥର ବସ୍ ଛକକୁ ତାଙ୍କର ପ୍ରେୟସୀକୁ ଭେଟିବା ପାଇଁ······ଦିନରେ ଦୁଇଥର ବସ୍‌ଟା ଆସେ ସେଇ ରାସ୍ତାରେ ସହରର ଯାତ୍ରୀମାନଙ୍କୁ ନେଇ···

ଆସନ୍ନ ଆଳାପର ଆଶଙ୍କାରେ ସେ ଶଙ୍କିତ ହୋଇ ଉଠିଲେ । ଓଃ ! ଏଇ ତିନୋଟି ସପ୍ତାହ । ସମଗ୍ର ଦୁନିଆଠାରୁ ବିଚ୍ଛିନ୍ନ ହୋଇ ଏଇ ଯେଉଁ ତିନୋଟି ସପ୍ତାହ ସେ ଏଇଠି କଟାଇ ଦେଲେ, କେତେ ତୃପ୍ତିରେ କଟି ଯାଇଛି ଏଇ ସମୟତକ ତାଙ୍କର ! ଏଇତ ଜୀବନର କେତୋଟି ଦୁର୍ଲ୍ଲଭ ମୂହୂର୍ତ୍ତ । ହଠାତ୍ ସେ ସଚେତନ ହୋଇ ଉଠିଲେ ସେ ବିଷୟରେ । ଏଇଠି ତାଙ୍କର ଏକମାତ୍ର ସଙ୍ଗୀ ଏଇ ସ୍ଥାନୀୟ ଶ୍ରମିକମାନେ । ସକାଳୁ ସେମାନେ ଆସନ୍ତି କାମ କରିବାକୁ । ସାଙ୍ଗରେ ନେଇ ଆସନ୍ତି ସେମାନଙ୍କର ଖାଦ୍ୟ । ଆଉ ଏଇଠି ଜଣେ ଶ୍ରମିକ ରମଣୀ ତାଙ୍କପାଇଁ ମଧ୍ୟ ଦିଟା ରାନ୍ଧି ଦେଇଥାଏ । ପାହାଡ଼ ଉପରେ ସେଇ କ୍ଷୁଦ୍ର ଗର୍ତ୍ତଟିରେ କାଠ ଦି'ଖଣ୍ଡ ଜାଳଦେଇ ସେ ଗରମ କରି ନିଅନ୍ତି ତାଙ୍କର ଖାଦ୍ୟ ପାତ୍ରଟିକୁ । ଏଇ ଗର୍ତ୍ତ—କେଉଁ ପ୍ରାଗୈତିହାସିକ ଯୁଗର ସେଇ ଆଦିମ ନରନାରୀମାନେ ବି ହିନେ ଏଇ ଗର୍ତ୍ତକୁ ବ୍ୟବହାର କରୁଥିଲେ ନିଜର ଜୀବନକୁ ଟିକିଏ ଉତ୍ତପ୍ତ କରିଦେବା ପାଇଁ । ଆଉ ସେଇ ପାହାଡ଼ୀ ଝରଣା, ଯାହାର ଉତ୍ସକୁ ସେମାନେ ଏଇ ଖନନ କାର୍ଯ୍ୟ ମଧ୍ୟରେ ଆବିଷ୍କାର କରିଛନ୍ତି, ଆଜି ବି ସେଇ ଝରଣାଟି ସେଇ ଉପକାର କରୁଛି ମଣିଷର ଯେଉଁ ଉପକାର ସେ କରୁଥିଲା ହଜାର ହଜାର ବର୍ଷତଳେ । ପ୍ରାଗୈତିହାସିକ ଯୁଗର ଏକ ଧ୍ୱଂସପ୍ରାପ୍ତ କୁଟୀରର ଚଟାଣ ଉପରେ ସେ ବାନ୍ଧିଛନ୍ତି ତାଙ୍କର ତମ୍ବୁ । ସେଇ ଆଦିମ ପୂର୍ବସୂରୀ-ମାନଙ୍କର ଜୀବନର ଛନ୍ଦକୁ ନିଜର ଜୀବନର ଛନ୍ଦ ରୂପେ ଗ୍ରହଣ କରି ନେଇଛନ୍ତି ସେ । ସେମାନଙ୍କର ଜୀବନର ରୁଟିନ୍ ଆଜି ବି ତାଙ୍କର ଜୀବନର ରୁଟିନ୍ ହୋଇଛି—ସେଇ ସମାନ ଅଭ୍ୟାସ, ସେଇ ସମାନ ପ୍ରୟୋ-ଜନୀୟତା । ପ୍ରତ୍ନତାତ୍ତ୍ୱିକ ଗବେଷଣା କାର୍ଯ୍ୟରେ ଏଇ ଆଦିମ ମାନବର ଅନୁଶୀଳନ ନୂଆ ନୂଆ ଆବିଷ୍କାର ପଥରେ ତାଙ୍କର ସହାୟକ ହେବ । ସେଇ ଆଶାରେ ସେ ଏଇ ଆଦିମ ଜୀବନ ପ୍ରଣାଳୀକୁ ନିଜର ଜୀବନ ପ୍ରଣାଳୀରୂପେ ବରି ନେଇଛନ୍ତି ଏଇଠି । ଆଜି ସେ ଜାଣନ୍ତି କେଉଁଠିକି ସେମାନେ ଯାଉଥିଲେ ପାଣି ଆଣିବା ପାଇଁ, କେଉଁ ପଥ ସେମାନେ ବ୍ୟବହାର କରୁଥିଲେ ଦୂର ଉପତ୍ୟକାକୁ ଯିବାପାଇଁ, କେଉଁଠି ସେମାନେ ସ୍ତୂପୀକୃତ କରୁଥିଲେ ସେମାନଙ୍କର ଆବର୍ଜନାକୁ, ଆଉ ସେଇ ଗୃହଶ ପାହୁଣ୍ଡ ଦୂରରେ ଯେଉଁ ଚକ୍‌ଚକ ପଥରଟି ରହିଛି କାହିଁକି ସେଇ ପଥରଟି ଏତେ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଥିଲା ସେମାନଙ୍କର ଜୀବନରେ । ଆଜି ସେ ଏକୁଟିଆ ସେଇ ପାହାଡ଼ ଚୂଡ଼ାରେ, ତାଙ୍କର ମନେ ହେଲା ସେ

ଯେମିତି ଧୀରେ ଧୀରେ ପ୍ରବେଶ କରି ପାରୁଛନ୍ତି ସେଇ ଆଦିମ ନରନାରୀ-ମାନଙ୍କର ମନଗହନ ଭିତରକୁ । ସେ ଅନୁଭବ କରିପାରୁଛନ୍ତି ସେଇ ବିରାଟ ନିଃସଙ୍ଗତା, ଯେଉଁ ନିଃସଙ୍ଗତା ଦିନେ ଆଚ୍ଛନ୍ନ କରି ଦେଇଥିଲା ଆଦିମ ମଣିଷର ମନକୁ ଯେତେବେଳେ ସେ ଏଇ ଉଲଗ୍ନ ପାହାଡ଼ ଚୂଡ଼ା ଉପରେ ଠିଆହୋଇ ଅନେଇ ଦେଇଥିଲା ତାରାଭରା ଆକାଶକୁ ଆଉ ସେଇ ବିରାଟ ପଥରଟାକୁ ଯେଉଁଟା ଗୋଟାଏ ଜାହାଜର ମଙ୍ଗପରି ମୁଣ୍ଡ ଟେକି ଉଠିଛି ଏକ ଘନକୃଷ୍ଣ ନିସ୍ପନ୍ଦ ସାଗରର ପୃଷ୍ଠଭୂମିରେ……ଏଇଠି ତ ଜନ୍ମ ହୋଇଥିଲା ଶାଶ୍ୱତ କାଳ, ଏଇଠି ତ ଜନ୍ମ ହୋଇଥିଲା ଆକାଶର ପ୍ରଥମ ତାରା—ଏଇଠି ଏଇ ଅଗ୍ନିଶିଖା ପାଖରେ । ପୃଥିବୀର ପ୍ରଥମ ମଣିଷ ଏମିତି ତ ଦିନେ ବିହ୍ୱଳ ହୋଇ ପଡ଼ିଥିଲା, ଅଭିଭୂତ ହୋଇ ପଡ଼ିଥିଲା, ଅସାଡ଼ ହୋଇ ପଡ଼ିଥିଲା ଏଇ ବିପୁଳ ବ୍ୟାପ୍ତି ଆଗରେ । ତାପରେ ହୁଏତ ସେମାନେ ଆଉ ବଞ୍ଚିପାରି ନାହାନ୍ତି ଏଇ ଦିବାଲୋକରେ । ଏଇ ଦିବାଲୋକ ସେମାନଙ୍କର ମନେ ହୋଇଛି ମୁହୂର୍ତ୍ତକର ଏକ ମାୟାପରି ଏଇ ସର୍ବବ୍ୟାପୀ ରାତ୍ରୀର ଅନ୍ଧକାର ଭିତରେ । ତାଙ୍କର ନିଜ ଜୀବନରେ ବି ଏମିତି ଗୋଟାଏ ଗୋଟାଏ ମୁହୂର୍ତ୍ତ ଆସିଛି ଯେତେବେଳେ ସେ ସନ୍ଦେହ କରିଛନ୍ତି ଏଇ ଦିବାଲୋକର ଅସ୍ତିତ୍ୱକୁ, ତାର ସତ୍ୟତାକୁ । ଏଇନେ ତାଙ୍କର ଆଖି ଆଗରେ ଅନ୍ତହୀନ ଅନ୍ଧକାର ଭିତରେ ଭାସି ଭାସି ଯାଉଛି ନକ୍ଷତ୍ରର ଭେଳା । ଆଉ ଯାର ଭିତରେ ପୁଣି ସୂର୍ଯ୍ୟସ୍ନାତ ଟୁକୁରାଏ ମାଟି ପୃଥିବୀର ! ଯା କ'ଣ ସମ୍ଭବ ? ତା କ'ଣ ସତ୍ୟ ? ଗୋଟାଏ ସ୍ୱଚ୍ଛ ସଲିଳକଣା ଭିତରେ ଯେମିତ କେବଳ ଆଲୋକର ଏକ ପଲକର ବର୍ଣ୍ଣିଳ ମାୟା—ରଙ୍ଗମଞ୍ଚର କୃତ୍ରିମ ଚିତ୍ରପଟ, ଆଲୁଅ ନିଭିଲେ ଯେଉଁ ଉଭେଇ ଯିବ ଆଖିର ପଲକରେ । ଅସରନ୍ତି ତମିସ୍ରାର ଆଦିଗନ୍ତ ସାଗର ଭିତରେ ଏଇ ଦିବାଲୋକ ଗୋଟାଏ କ୍ଷଣିକ ବୁଦ୍‌ବୁଦ୍‌ ମାତ୍ର !

ମାଳାଭ ସନ୍ଧ୍ୟା ହଜି ହଜି ଯାଉଛି ତମସାମୟୀ ରଜନୀର ସର୍ବବ୍ୟାପୀ ଗ୍ରାସ ଭିତରେ

ଆଉ ଏଇ ଆଦିଅନ୍ତହୀନ ଅସ୍ତିତ୍ୱ ଭିତରେ ହଠାତ୍ ଆସି ପହଞ୍ଚିଛି ତାଙ୍କର ପ୍ରେୟସୀର ଚିଠି । କେଉଁ ସୁଦୂର ଏକ ନକ୍ଷତ୍ରରୁ ଏକ ଅପ୍ରତ୍ୟାଶିତ ଆହ୍ୱାନ ଯେମିତି ଆସିଛି ସେମିତି ଆସିଛି ଏଇ ଚିଠି । ପ୍ରେୟସୀ ତାଙ୍କର ଆସୁଛି ତାଙ୍କ ପାଖକୁ । ଧୀରେ ଧୀରେ ସେ ସଚେତନ ହୋଇ ଉଠୁଛନ୍ତି ସେ ଚିଠିଟି ପଢ଼ୁ ପଢ଼ୁ ମନ ତାଙ୍କର ଭରି ଉଠୁଛି ଧ ରକ୍ତରେ । ଚିଠିରେ

ଅଛୁ ଅତି ତୁଚ୍ଛ, ଅତି ନଗଣ୍ୟ ଘଟଣାର ବିବରଣୀ, ଅତି ଅନାବଶ୍ୟକ ଜଞ୍ଜାଳର କାହାଣୀ—ଯେଉଁ ସବୁ ଘଟଣା, ଯେଉଁ ସବୁ ଜଞ୍ଜାଳରେ ତାଙ୍କର ଆଉ କୌଣସି ଆଗ୍ରହ ନାହିଁ ।

ଶଠି ମତି ସେ ଅଶାନ୍ତ, ଅସ୍ଥିର ହୋଇ ଉଠିଛନ୍ତି । ଏଥି ଭିତରେ ଏଇ ଯେଉଁ ନୂତନ ଜୀବନ ପଦ୍ଧତି ସହିତ ସେ ଅଭ୍ୟସ୍ତ ହୋଇ ପଡ଼ିଛନ୍ତି ସେଇ ଜୀବନ ପଦ୍ଧତି ଏଥର ବଦଳିଯିବ, ଓଲଟ ପାଲଟ ହୋଇଯିବ, ହୁଏତ ସମ୍ପୂର୍ଣ୍ଣ ରୂପେ ଧ୍ୱଂସ ପାଇଯିବ । ଏଇ କେତେ ଦିନ ଧରି ହଜାର ହଜାର ବର୍ଷର ଅତୀତ ଭିତରେ ସେ ତାଙ୍କର ଦିନ ଗୁଡ଼ାକ କଟାଇ ଦେଇ ଆସିଛନ୍ତି । ରାତି ଗୁଡ଼ାକ ଆକାଶର ନକ୍ଷତ୍ର ଗଣନରେ କଟାଇ ଦେଇଛନ୍ତି । ତା ଆଉ ଏଥର ସମ୍ଭବ ହେବ ନାହିଁ । ଗୋଟାଏ ମୁହୂର୍ତ୍ତ ପାଇଁ ସେ ବଡ଼ ଅସହାୟ ବୋଧକଲେ, ମନଟା ତାଙ୍କର ଏକ ଅସହାୟ ଆକ୍ରୋଶରେ ଭରି ଉଠିଲା । ଜଣେ ନିଶାଖୋର ତାର ଦୈନନ୍ଦିନ ନିଶାପାନରୁ ହଠାତ୍ ବଞ୍ଚିତ ହୋଇଗଲେ ଯେମିତି ଅନୁଭବ କରେ ଠିକ୍ ସେମିତି ଅନୁଭବ କରିବାକୁ ଲାଗିଲେ ।

ମନରେ ଧୂଳି ପଟଳ ଉଡ଼ାଇ ବସ୍ ଆସି ପହଞ୍ଚି ଗଲାଣି । ଗାଡ଼ିଟା ଥମିଯିବା ପରେ ବି ଧୂଳିର ଆବର୍ତ୍ତ ଘେରି ରହିଛି ଗାଡ଼ିଟାକୁ । ଏଇ ଶ୍ୱେତ ଶୁଭ୍ର ଧୂଳିପଟଳର ଶ୍ୱାସ ରୋଧକାରୀ ଆବରଣର ଅନ୍ତରାଳରେ ଲୁଚିଗଲା ସେମାନଙ୍କର ମିଳନ ଲଗ୍ନ । ସେମାନେ ନିଜର ଦମ୍ ଫେରି ପାଇବା ପୂର୍ବରୁ ଗାଡ଼ିଟା ପୁଣି ଗଡ଼ିଦେଲା ଆଉ ସେମାନଙ୍କୁ ପୁଣି ଆଉ ଏକ ନିବିଡ଼ ଧୂଳି ପଟଳ ଭିତରେ ଆଚ୍ଛନ୍ନକରି ଦେଇଗଲା । ନିଜର ପ୍ରେୟସୀ ପାଖରେ ଠିଆ ହୋଇ ସେ ଯେତେବେଳେ ବୁଝିଲେ ଯେ କି ମଳିନ ଅପରିଷ୍କାର ପୋଷାକ ସେ ପିନ୍ଧିଛନ୍ତି ଆଉ ନିଜକୁ କିପରି ସେ ଏତେ ଦିନ ଧରି ଅବହେଳା କରି ଆସିଛନ୍ତି ସେତେବେଳେ ସେ ଭାରି ଲଜ୍ଜିତ ହୋଇ ଉଠିଲେ ମନେ ମନେ । ତାଙ୍କର ପ୍ୟାଣ୍ଟଟା ଆଣ୍ଠୁ ପାଖରେ ଛିଣ୍ଡି ଯାଇଛି ଆଉ ପତଳା ଶାର୍ଟଟା ଲାଗି ଯାଇଛି ଝାଳଭିଜା ଦେହରେ ତାଙ୍କର । ବସ୍ ପାଖକୁ ଆସିବା ପୂର୍ବରୁ ଟିକିଏ ସଫାସୁତୁରା ହୋଇ ଆସିଥିଲେ ହୋଇଥାନ୍ତା ! ନିଜକୁ ନିଜେ ଭର୍ତ୍ସନା କରିବାକୁ ଲାଗିଲେ ସେ.........

ଏକାଠି ସେମାନେ ପାହାଡ଼ ଉପରେ ଚଢ଼ି ଚଢ଼ି ଚାଲିଛନ୍ତି, ତାଙ୍କୁ ଆଗରେ ଆଗରେ ଯିବା ପାଇଁ ସେ ଛାଡ଼ି ଦେଇଛନ୍ତି ଜାଣିଶୁଣି । ତାହାଲେ

ସେ ପଛରୁ ରଙ୍ଗ ଦେଖି ପାରବେ ତାର ସେଇ ଅନାବୃତ ପଦଯୁଗଳକୁ । କିନ୍ତୁ କାହିଁ ମନରେ ତାଙ୍କର ସାମାନ୍ୟତମ ଉତ୍ତେଜନା ବି ସୃଷ୍ଟି ହେଉନାହିଁ । ତାର ସେଇ ତରଙ୍ଗିତ ପୋଷାକର ଲାସ୍ୟ, ତାର ଚଞ୍ଚଳତାର ସେଇ ଅନ୍ତ ଘଣ୍ଟତ ସୁରଭି, ତାର ସେଇ ଓଠ, ସେଇ ଆଖି, ସେଇ ଭ୍ରୂଲତା, କେଉଁଥିରେ କାହିଁ ତାଙ୍କର ମନ ଆଜ ପ୍ରଲୋଭିତ ହୋଇ ଉଠୁନାହିଁ । ପଛକୁ ମୁହଁ ଫେରାଇ, ଆଖିରେ କେତକାର କଟାକ୍ଷ ତୋଳି ଯେତେବେଳେ ସେ ଓଠରେ ସ୍ମିତହାସ୍ୟ ଫୁଟାଇ ଦେଉଛି ସେତେବେଳେ ବି ଦେହରେ ତାଙ୍କର ସାମାନ୍ୟ ଶିହରଣ ଜାଗି ଉଠୁନାହିଁ । ବରଂ ଏକ ଅସ୍ପଷ୍ଟ ଅଜଣା ବେଦନାର ସ୍ପର୍ଶ ଚେଇଁ ଉଠୁଛି ସତ୍ତ୍ୱାରେ ତାଙ୍କର । ଆଖି ଆଗରେ ତାଙ୍କର ଭାସି ଉଠିଛି ସେହି ପାହାଡ଼ ଚୂଡ଼ାର ଛବି—ରାତ୍ରିର ବିପୁଳ ପ୍ରଶାନ୍ତ ଭିତରେ ନିମଜ୍ଜିତ ସେଇ ପାହାଡ଼ର ଚୂଡ଼ା, ସେଇ ତାରାଦୀପ୍ତ ନୀରବତା । ସେ ସବୁ ଆଜ ହୁଏତ ଫେରି ଆସିବ ନାହିଁ ତାଙ୍କ ଜୀବନରେ ! ନିର୍ଲିପ୍ତ ମନରେ ସେ ଶୁଣିଯାଉଛନ୍ତି ତାର ପ୍ରଗଲଭତାକୁ—ସୁଦୂର ପୃଷ୍ଠଭୂମିର ସଙ୍ଗୀତ ପରି ଭାସି ଆସୁଛି ତାର ବାଣୀ, ସେ ବାଣୀ ମିଶି ଯାଉଛି ଝିଲ୍ଲୀର ଝଙ୍କାର ସହିତ, ଘାସର ଫୁଲେ ଫୁଲେ ଖେଳି ଖେଳି ବୁଲୁଥିବା ଅଗଣିତ କୀଟ ପତଙ୍ଗର ମୃଦୁ ଗୁଞ୍ଜରଣ ସହିତ । ତାର ସେ ବାଣୀର କୌଣସି ସ୍ୱତନ୍ତ୍ର ସତ୍ତ୍ୱା ଆଜ ଯେମିତି ନାହିଁ ।

ସେ ତାଙ୍କୁ ବୁଝାଇବାକୁ ଚେଷ୍ଟା କଲେ ତାଙ୍କର ସେଇ ପ୍ରତ୍ନତାତ୍ତ୍ୱିକ ଖନନ କ୍ଷେତ୍ରର ସୁଦୀର୍ଘ ଇତିହାସର କାହାଣୀ । କିନ୍ତୁ ସେ ବୁଝିପାରିଲା ପରି ମନେ ହେଲା ନାହିଁ । ଜଣେ ପେଶାଦାର ପର୍ଯ୍ୟଟକ ପରି ସେ କେବଳ ପ୍ରଶ୍ନ କରିବାକୁ ଲାଗିଲା, କେବଳ ଜାଣିବାକୁ ଚାହିଁଲା କେତୋଟି ନୀରସ ତଥ୍ୟ, କେତୋଟି ଅର୍ଥହୀନ ହିସାବ । ଅବଶେଷରେ ସେମାନେ ଯେତେବେଳେ ପହଞ୍ଚିଲେ ସେଇ ଲମ୍ବା ଚାରିକୋଣିଆ କାଗଜପଟାର ଖୋଳ ପାଖରେ ସେତେବେଳେ ତାର ପ୍ରଶ୍ନର ଠିକ୍ ଉତ୍ତର ସେ ଆଜ ପାଇଲା ନାହିଁ । ତାର ପ୍ରଶ୍ନର ନିର୍ଦ୍ଦିଷ୍ଟ ଉତ୍ତର ସେ ଆଜ ଦେଲେ ନାହିଁ । ସେ କେବଳ କହିଲେ, ସେଇ ଖୋଳ ଭିତରେ କିଛି ନାହିଁ । ହୁଏତ ଅବଜ୍ଞା କରି କିମ୍ବା ହୁଏତ ସଙ୍କୋଚ କରି ସେ ମିଥ୍ୟା ଉତ୍ତର ଦେଲେ । କାହିଁକି ଯେ ସେ ଏଇ ପ୍ରଶ୍ନର ଭୁଲ ଉତ୍ତର ଦେଲେ ତା ସେ ନିଜେ ଜାଣନ୍ତି ନାହିଁ । ସେଇ ଖୋଳ ଭିତରେ ଥିବା ବସ୍ତୁଟି ହେଉଛି ତାଙ୍କର ଜୀବନର ଶ୍ରେଷ୍ଠ ଆବିଷ୍କାର । ସେ ଚାହାନ୍ତି ନାହିଁ ସେ ବିଷୟରେ କାହା ସହିତ କୌଣସି ପ୍ରକାର ଆଲୋଚନା

କରିବାକୁ । ଏଇ ବସ୍ତୁଟି ଅନନ୍ୟ । ସବୁ ବସ୍ତୁପରି ନୁହଁ ଯାହାକୁ ମାଟି ଭିତରୁ ଖୋଳିକାଢ଼ି ଉଠେଇ ନେଇ, ଓଜନ କରି, ମାପଜୁପ କରି, ବିଜ୍ଞାନୀ ଆଖିରେ ପରୀକ୍ଷା ନିରୀକ୍ଷା କରି ମ୍ୟୁଜିୟମରେ ରଖି ଦିଆଯାଇ ପାରିବ । ପିନ୍ ଅଗରେ ବିଦ୍ଧ ପତଙ୍ଗ ପରି ଗୋଟାଏ ସାମଗ୍ରୀ ଏଇଟା ନୁହଁ ! ତେଣୁ ଅନ୍ୟାନ୍ୟ ପ୍ରତ୍ନତାତ୍ତ୍ୱିକ ସାମଗ୍ରୀ ପରି ଏହି ସାମଗ୍ରୀ ସମ୍ପର୍କରେ କୌଣସି ଆଲୋଚନା କରିବାକୁ ସେ ଗୃହାନ୍ତି ନାହିଁ କାହା ସହିତ ।

ନାଁ, ସେ ଆଦୌ ଗୃହାନ୍ତି ନାହିଁ । ତେଣୁ ମନେ ମନେ ବିରକ୍ତ ହୋଇ ସେ ତାକୁ ଆଗେଇ ନେଲେ ତମ୍ବୁ ପାଖକୁ । ଷ୍ଟୋଭ୍ ଟି ଜାଳିଦେଇ ବସି ପଡ଼ିଲେ ତା ପାଖରେ ମାରିବରେ । ଆଃ, ଏଇ ପାଗଟା ବଦଳିଯା'ନ୍ତା କି ହାଠାତ୍ ! ହଠାତ୍ ଏଇ ଆକାଶଟା ମେଘାଚ୍ଛନ୍ନ ହୋଇଯା'ନ୍ତା କି କେମିତି ! କିନ୍ତୁ ଆକାଶଟା ଖାଲି କଳା ହୋଇ ଉଠିଲା, ଆଉ ସେଇ ଆଦିମ ଯୁଗର ବଳି ପଥରଟା ଉପରେ ଉଙ୍କିମାରି ଉଠିଲା ଆକାଶରେ ପ୍ରଥମ ତାରା, ସନ୍ଧ୍ୟା ତାରା ।

ସେତିକବେଳେ ଯାଇ ତରୁଣୀ ତାଙ୍କୁ କହିଲା ସେମାନଙ୍କୁ ଗୋଟାଏ କିଛି ନିଷ୍ପତ୍ତିରେ ଉପନୀତ ହେବାକୁ ପଡ଼ିବ । ତାର ପଢ଼ାପଢ଼ି ଶେଷ ହୋଇ ଗଲାଣି, ଜଣେ ନାରୀ ପକ୍ଷରେ ଆଉ ବେଶିକାଳ ପ୍ରତୀକ୍ଷା କରି ରହିବା ଭଲ ନୁହଁ । ପିତା ମାତା ଆଉ ସନ୍ତାନର ବୟସ ମଧ୍ୟରେ ଅତି ବେଶି ବ୍ୟବଧାନ ରହିବା ଅନୁଚିତ......

ତାର ସେ ଶବ୍ଦର ବାଣୀ, ତାର ସେ ଶବ୍ଦର ସ୍ରୋତ ପୁଣି ମିଳେଇ ଗଲା ଝିଲ୍ଲୀର ଝଙ୍କାର ଭିତରେ, ପ୍ରଜ୍ୱଳିତ ଅଗ୍ନି ଶିଖାର ସାଁ ସାଁ ଶବ୍ଦ ଭିତରେ । ଦୂରରୁ, ପାହାଡ଼ ତଳର କେଉଁ ଏକ ସୁଦୂର ଉପତ୍ୟକା ଭିତରୁ ଭାସି ଆସିଲା ନିଃସଙ୍ଗ ଚକ୍ରବାକର କରୁଣ କ୍ରନ୍ଦନ । ରମଣୀର ପ୍ରତିଟି ଶବ୍ଦର ଅର୍ଥ କେବଳ ସେ ବୁଝିପାରୁ ଥିଲେ, ତାର ତାତ୍ପର୍ଯ୍ୟକୁ ହୃଦୟଙ୍ଗମ କରିବାକୁ ସେ ଗୃହୁ ନଥିଲେ । କିଛି ନା କିଛି ଗୋଟାଏ ଘଟିବ ବୋଲି ଧରି ନିଆ ହୋଇଛି, ଆଉ ତାଙ୍କର ସମ୍ମତିର ପ୍ରତ୍ୟାଶା ରଖାଯାଇଛି ଏମିତି ଏକ ବିଷୟରେ ଯାହାକି ତାଙ୍କ ପକ୍ଷରେ ଏକାନ୍ତ ଅର୍ଥହୀନ, ଯାହାକୁ ସେ ଏପର୍ଯ୍ୟନ୍ତ ବିଶ୍ୱରକୁ ସୁଦ୍ଧା ନେଇ ନାହାନ୍ତି ଆଉ ଯାହା ଘଟିବ ଏଇ ରାତିରେ, ଏଇ ଅନନ୍ତ ଆବର୍ତ୍ତମାନ ତାରାଭରା ଆକାଶ ତଳେ ।

ଗୋଟାଏ ଅବୋଧ ଆଶଙ୍କାରେ ଆଚ୍ଛନ୍ନ ହୋଇଗଲା ତାଙ୍କର ମନ । ତାଙ୍କୁ ଲାଗିଲା ସତେ ଯେମିତି ତାଙ୍କ ଚତୁର୍ଦ୍ଦିଗରେ ଏଇ ଅନ୍ଧକାର ଭିତରେ କିଏ ଲକ୍ଷ ଲକ୍ଷ ଉଜ୍ଜ୍ୱଳ ଦୀପାଳୀ ଜାଳି ଦେଇ ଯାଉଛି । ତାଙ୍କର ମନେ ପଡ଼ିଗଲା ସେଇ କଙ୍କାଳର କଥା, ତାର ସେଇ ବସ୍ତୁଗହ୍ୱରର ଦୃଶ୍ୟ, ତାର ସେଇ କଟିତଟର ଅସ୍ଥିଯୁଗଳ ଯାହାକୁ ସେ ଏତେ କଷ୍ଟରେ ପରିଷ୍କାର କରିଦେଇଛନ୍ତି । ଗୋଟାଏ ଗର୍ତ୍ତ ଭିତରେ ନୁହଇଁ ବସ୍ତୁଟି ମଣିଷ ପାଲଟି ଯାଇପାରେ—ଶରଦ୍ଧନ ସକାଶେ ମଣିଷ ପାଲଟି ଯାଇ ପାରେ, ସେଥିପାଇଁ ଗୋଟିଏ ଗର୍ତ୍ତ ଯଥେଷ୍ଟ । ଆଜ ଜୁନ୍ ପନ୍ଦର ୨୦୦୯୫୭ ଖ୍ରୀଷ୍ଟାବ୍ଦରେ······

ନୀରବରେ ସେ ବସି ରହିଲେ, ପ୍ରଜ୍ଜ୍ୱଳିତ ଅଗ୍ନିଶିଖା ଉପରେ ଅପଲକ ଦୃଷ୍ଟି ନିବଦ୍ଧ କରି । ତାଙ୍କର ପ୍ରେୟସୀ ସେମିତି ଗପିଯାଉଛି, କହିଯାଉଛି ଅନେକ କଥା ନିରୁଦ୍‌ବିଗ୍ନ କଣ୍ଠରେ । ହୁଏତ କିଛି ନ ଭାବି ନ ଚିନ୍ତି ଯନ୍ତ୍ରବତ୍ ସେ ତାର କଥାର ଉତ୍ତର ଦେଇ ଯାଉଛନ୍ତି । ରମଣୀ ଲକ୍ଷ୍ୟ କରି ପାରିନାହିଁ ତାଙ୍କର ମନର ଏହି ଅଦ୍‌ଭୁତ ପ୍ରତିକ୍ରିୟାକୁ । ଆଉ ତାପରେ ଧୀରେ ଧୀରେ ଗୋଟିଏ ପରେ ଗୋଟିଏ ଶିଖା ଯେତେବେଳେ ନିଷ୍ପ୍ରଭ ହୋଇ ଆସିଲା ତରୁଣୀ ଉଠିଲା ତାର ଆସ୍ଥାନରୁ । ଆସ୍ତେ ଆସ୍ତେ ତାଙ୍କର କାନ୍ଧ ଉପରେ ତାର ହସ୍ତର ମୃଦୁ ସ୍ପର୍ଶ ଲଗାଇ ଦେଇ ସେ ଚାଲିଗଲା ତମ୍ବୁ ଭିତରକୁ । ପୁରୁଷ ଶୁଣିଲେ ରମଣୀ ତାର ପରିଧେୟ ପରିବର୍ତ୍ତନ କରି ଚାଲିଗଲା ଶୟନ କରିବାକୁ । ତାପରେ ସବୁ ପୁଣି ନୀରବ, ନିସ୍ତବ୍‌ଧ ହୋଇଗଲା । କ୍ରମେ କ୍ରମେ ନିର୍ବାପିତ ହୋଇଗଲା ଅଗ୍ନିର ଶିଖା । କେବଳ ସେଇ ଗମ୍ଭୀର ଆକାଶରେ ଭାସି ଭାସି ଚାଲିଲା ଅଗଣିତ ନକ୍ଷତ୍ରର ମେଳା ।

ପୁଣି ସେଇ ବିପୁଳା ଗଭୀର ବ୍ୟାପ୍ତି ଘେରିଗଲା ତାଙ୍କର ଚତୁର୍ଦ୍ଦିଗରେ······କିନ୍ତୁ ଏଇ କେତୋଟି ମୁହୂର୍ତ୍ତ ତଳେ ମଣିଷ କଣ୍ଠର ଯେଉଁ କେତୋଟି ଧ୍ୱନି ତାଙ୍କର କାନରେ ପଡ଼ିଥିଲା ସେଇ ଧ୍ୱନିଗୁଡ଼ିକ ପୁଣି ତାଙ୍କର ସତ୍ତାରେ ମସ୍ତିଷ୍କରେ ଜାଗିଉଠିଲା ଏକ ଆଦିମ ମଣିଷ ହୋଇ, ଯେଉଁ ଆଦିମ ମଣିଷ ଶୀକାରକୁ ଫେରି ଆସି କାକରଜୁକୁହୋଇ ବସି ପଡ଼େ ମାଟି ଉପରେ ଆଉ ମଥା ଉପରର ସେଇ ନିତଳ ନିଥଳ ଦୀପ୍ତିକୁ ବିହ୍ୱଳଗ୍ରସ୍ତ ଦୃଷ୍ଟିରେ ଅନେଇ ଅନେଇ ଅଭିଭୂତ ହୋଇ ଉଠେ, ଶିହରି ଉଠେ ଏକ ଅଜଣା ଆଶଙ୍କା ମିଶା ଆବେଗରେ । ତାଙ୍କର ମନେ ହେଲା ତାଙ୍କର ଗଣିତ ସତ୍ତାର ସେଇ ନିର୍ଲିପ୍ତତାର ଭିତ୍ତି ଯେମିତି ଦୋହଲି ଯାଉଛି ଆଜି ତାଙ୍କର ଜନ୍ମ

କାଲରୁ ନିଜର ସତ୍ତାର ଯେଉଁ ପରିଚୟ ସେ ପାଇ ଆସିଛନ୍ତି—ଯେଉଁ ସତ୍ତାକୁ ସେ ଭାବନେଇଛନ୍ତି ବାସ୍ତବତାର ତରଳ ବୁକୁ ଉପରେ ଭାସମାନ ଏକ ଅନନ୍ତ, ଅକ୍ଷୟ ଚେତନା ବୋଲି—ସେଇ ସତ୍ତା ହଠାତ୍ ଯେମିତି କଠିନ ହୋଇ ଉଠିଲା, ସଙ୍କୁଚିତ ହୋଇ ଆସିଲା ଆଉ କ୍ରମେ ଏକ ସରଳ ସାଧାରଣ ମଣିଷ ପାଲଟି ଗଲା, ଯେଉଁ ମଣିଷ ଜନ୍ମ ହୋଇଛି ଦିନେ ମରିବା ପାଇଁ । ଧୀରେ ଧୀରେ ତାଙ୍କର ମସ୍ତିଷ୍କ ଭିତରେ ଚେଇଁ ଉଠିଲା ଗୋଟାଏ ଭିନ୍ନ ଚେତନା—ସେ ଗ୍ରହଣ କରନ୍ତୁ ବା ନ ଗ୍ରହଣ କରନ୍ତୁ ତାଙ୍କୁ ମାନି ନେବାକୁ ପଡ଼ିବ ସେଇ ଅତି ସରଳ, ଅତି ତାତ୍ପର୍ଯ୍ୟହୀନ ନିଜତ୍ୱର ସଂଜ୍ଞାକୁ ଆଉ ତଦନୁଯାୟୀ ତାଙ୍କୁ କାର୍ଯ୍ୟ କରିବାକୁ ପଡ଼ିବ । ଗୋଟାଏ ରୁକ୍ଷ କଠୋର ପାଷାଣ ପ୍ରାଚୀର ପରି ଜାଗି ଉଠିଲା ଏକ ଚେତନା ତାଙ୍କର ଆଖି ଆଗରେ—ସେ କୌଣସି ପଥରେ ଆଗେଇ ଯିବାକୁ ହେଲେ ବି ତାଙ୍କୁ ଅତିକ୍ରମ କରିବାକୁ ପଡ଼ିବ ଏଇ ପାଷାଣ ପ୍ରାଚୀରକୁ ।

ତାଙ୍କର ଦୃଷ୍ଟି ନଇଁ ଆସିଲା ତାଙ୍କର ହାତ ଉପରକୁ । ଅଗଣିତ ତାରକାର ମ୍ଳାନ ଆଲୋକରେ ପାଂଶୁଳ ଦେଖାଯାଉଛି ତାଙ୍କର ସେଇ ହାତ ଦୁଇଟା । ସ୍ୱେତ ମଣିଷର ହାତ, ଅନ୍ତହୀନ ପରିବର୍ତ୍ତନ ଆଉ ଅନ୍ତହୀନ ଯୋଗବିଯୋଗ ଭିତର ଦେଇ ସେଇ ଅପରିବର୍ତ୍ତମୟ ରୂପରେ ଗଢ଼ାହୋଇ ଆସିଛି ଏଇ ହାତ ପୁରୁଷ ପୁରୁଷ ଧରି······ସେଇ ପ୍ରାଗୈତିହାସିକ ନାରୀପରି ସେ ବି ତ ଦିନେ ଜନ୍ମ ହୋଇଥିଲେ ଆଉ ତାରି ପରି ସେ ବି ତ ଦିନେ ମରିବେ । ନିଜ ସମ୍ପର୍କରେ ନିଜେ ସଚେତନ ହେବା ପାଇଁ ଏଇ ମଣିଷ ଜାତିକୁ ଅଯୁତ ଅଯୁତ ବର୍ଷ ଲାଗିଥିଲେ ବି ଦିନେ ନା ଦିନେ ତାକୁ ନିଶ୍ଚିହ୍ନ ହୋଇ ଯିବାକୁ ପଡ଼ିବ ଏଇ ପୃଥିବୀରୁ, ଆଉ ତାପରେ ବି ଏଇ ପୃଥିବୀ ଯେମିତି ଘୂରୁଥିବ ଏଇ ମହାଶୂନ୍ୟରେ ତାର ସେଇ ସୀମାହୀନ ଗତି ପଥରେ, ବୁକୁରେ ତାର ମଣିଷର ଧ୍ୱଂସାବଶେଷ, ମଣିଷର ଅସ୍ଥି, ମଣିଷର ହାତଗଢ଼ା ଅଟ୍ଟାଳିକାର ଧ୍ୱଂସସ୍ତୂପ, ପାହାଡ଼ ପଥରରେ ଅଙ୍କା ମଣିଷର ଛବି, ମଣିଷର ବିଲୀନ ଅସ୍ତିତ୍ୱର ଅଦ୍ଭୁତ ସ୍ୱାକ୍ଷରକୁ ବହନକରି । ଏଇ ଅପରିଚିତା ନାରୀ, ଯିଏ ତାର ଜୀବନର ମାତ୍ର କେତୋଟି ଫାଲ୍‌ଗୁନ ଭିତରେ ଏଇ ଅକ୍ଷୟ କଙ୍କାଳକୁ ସୃଷ୍ଟି କରି ପାରିଥିଲା ଯିଏ ଯେମିତି ପଡ଼ିଥିବ କେଉଁ ମ୍ୟୁଜିୟମ୍‌ର କେଉଁ ଏକ କାଚର ଆବରଣ ଭିତରେ, ଆଉ ଝଡ଼ ତୋଫାନରେ, ଖରା ବର୍ଷାରେ କେଉଁ କାଳୁଁ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଯାଇଥିବ ସେଇ ମ୍ୟୁଜିୟମ୍‌ର ବାତାୟନ ଆଉ ସେଇ ସମଗ୍ର ମ୍ୟୁଜିୟମ୍ ହୁଏତ ପୋତିହୋଇ

ରହିଥିବ ମେଦିନୀର ଅତଳ ଗର୍ଭ ଭିତରେ । ଆଉ ଏଇ ନାଗ୍ନି, ଏଇ ନାଗ୍ନିର କଙ୍କାଳ ହୁଏତ ନିଶ୍ଚିହ୍ନ ମାନବ ଜାତିର ଏକ ଉଜ୍ଜ୍ୱଳ ସ୍ମାରକୀ ହୋଇ ତିଷ୍ଠି ରହିବ, ଅଥଚ ମଣିଷର ଭାବର ଭଣ୍ଡାର ପୋଥି ଆଉ ପୁସ୍ତକରେ, ଭଙ୍ଗା ଭଙ୍ଗା ପାଷାଣର ସ୍ତମ୍ଭରେ, ବିବକ୍ତ ରାଜପଥର ଧ୍ୱଂସସ୍ତୂପ ଉପରେ, ଏଇ ବିଶାଳ ପୃଥିବୀର ଭୂପୃଷ୍ଠରେ ବିକ୍ଷିପ୍ତ ହୋଇ ରହିଥିଲେ ବି ତାର କୌଣସି ସତ୍ତା ଆଉ ନଥିବ । ଆଉ ହୁଏତ କେତୋଟି ଅୟୁତ ବର୍ଷ, ତାପରେ ସବୁ ଶେଷ, ସବୁ ହୁଏତ ନିଶ୍ଚିହ୍ନ ହୋଇ ଯାଇଥିବ, ଚିରଦିନ ପାଇଁ ନିଶ୍ଚିହ୍ନ ହୋଇ ଯାଇଥିବ·········

ନିଜ ଗୋଠରୁ ହଠାତ୍ ବିଚ୍ଛିନ୍ନ ହୋଇ ପଡ଼ିଥିବା ଗୋଟିଏ ନିଃସଙ୍ଗ ପଶୁପରି ଭୟରେ ଥରି ଉଠିଲେ ସେ······ଆକାଶଭରା ସେହି ଭ୍ରମଣୀତଳ ଅଗଣିତ ଆଲୋକ ଭିତରୁ ଗୋଟାଏ ମ୍ଳାନ ଅସହ୍ୟ ବେଦନାର ଶିଖା ପ୍ରଜ୍ଜ୍ୱଳିତ ହୋଇ ଉଠିଲା ତାଙ୍କର ଅନ୍ତର ଭିତରେ । ଆତ୍ମଦୈନ୍ୟର ବେଦନା ସେ ନୁହେଁ, ସେ ବେଦନା ଏକ କରୁଣା ସମଗ୍ର ମାନବଜାତି ପାଇଁ ଯିଏ ଦିନେ ନିଶ୍ଚିହ୍ନ ହୋଇଯିବ ଏହି ଭୂପୃଷ୍ଠରୁ ଆଉ ସ୍ମୃତି ରୂପେ କେବଳ ଛାଡ଼ି ଦେଇ ଯିବ କେତୋଟି ଟୁକୁରା ଟୁକୁରା ଅସ୍ଥି, ଚିରନ୍ତନ ବାଲୁକା ସ୍ତୂପ ଭିତରେ ଆବୃତ ହୋଇ ପଡ଼ିଥିବ ସେହି ଅସ୍ଥି । ମଣିଷର ସକଳ ଆନନ୍ଦ, ସକଳ ଆବେଗର କ'ଣ ଏହାହିଁ ପରିଣତି !

ହଠାତ୍ ତାଙ୍କର ଖିଆଲ ହେଲା ମାଖ ତମ୍ବୁ ଭିତରେ ଶୋଇଛନ୍ତି ତାଙ୍କର ପ୍ରେୟସୀ । ତମ୍ବୁର ଅର୍ଦ୍ଧ ଅନ୍ଧକାର ଭିତରେ ସେ ଶୋଇଛନ୍ତି ନୀରବ ପ୍ରତୀକ୍ଷାରେ ତାଙ୍କରି ପାଇଁ । ଏକ ଉଦ୍ଦାମ ମାନବିକ ଆବେଗର ବନ୍ୟାରେ ପ୍ଲାବିତ ହୋଇଗଲା ତାଙ୍କର ପ୍ରାଣ—ମରୁଭୂମିର ଜଣେ ଯାତ୍ରୀ ବହୁଦିନର ନିଃସଙ୍ଗତା ପରେ ହଠାତ୍ ଆଉ ଜଣେ ଯାତ୍ରୀକୁ ଦେଖିଲେ ଯେମିତି ହୁଏ ସେ ଠିକ୍ ସେମିତି ଆବେଗ ଆକୁଳ ହୋଇ ଉଠିଲେ । ତାର ସେଇ ଦୁଇ ବାହୁର ନରମ ଆଶ୍ଳେଷ, ତାର ସେଇ ସୁକୋମଳ ଭିଜା ଭିଜା ଓଠର ସ୍ପର୍ଶ, ତାର ସେଇ ବାମ ସ୍ତନ ଉପରେ ସେଇ ଅତି ପରିଚିତ କ୍ଷୁଦ୍ର ତିଳ ଚିହ୍ନଟି, ତାର ହୃଦୟର ସେହି ଧୀର ସ୍ପନ୍ଦନ, ସବୁ, ସବୁ କିଛି ନୀରବରେ ପ୍ରତୀକ୍ଷା କରି ରହିଛି ତାଙ୍କରି ପାଇଁ ।

ଏଇ ଭୟାବହ ସର୍ବବ୍ୟାପୀ ନିଃସଙ୍ଗତା, ଏଇ ଅନ୍ତହୀନ ରାତ୍ରି, ସୃଷ୍ଟିର ଏଇ ଚରମ ପରିଣତି ଯାହା ଦିନେ ନା ଦିନେ ଜୀବନର ସମଗ୍ର

ସତ୍ତାକୁ ନିଶ୍ଚିହ୍ନ କରି ହିମଶୀତଳ ବରଫର ଆସ୍ତରଣ ଭିତରେ ତାଙ୍କୁ ଢାଙ୍କି ଦେଇ ଗୁଳିଯିବ—ଏ ସବୁ ବିରୁଦ୍ଧରେ ଗୋଟାଏ ମୁହୂର୍ତ୍ତ ପାଇଁ ମଥା ଟେକି ଠିଆ ହେବାକୁ ଇଚ୍ଛା ହେଲା ତାଙ୍କର । ସେ ଉଠି ଠିଆ ହେଲେ । ଏଇ ସର୍ବବ୍ୟାପୀ ଶୂନ୍ୟତା ବିରୁଦ୍ଧରେ ବିଦ୍ରୋହ କରି ଉଠିଲା ତାଙ୍କର ସମଗ୍ର ସତ୍ତା । ଆଃ, ଏଇ ଘନକୃଷ୍ଣ କଠୋର ପାଷାଣର ବୁକୁ ଉପରେ ନିଜର ସ୍ୱାକ୍ଷର ସେ ରଖିଦେଇ ପାରନ୍ତେ କି ! କେହି ତାଙ୍କୁ କେବେ ଦେଖି ନପାରୁ ପଛେ । ଗୋଟିଏ ସଂକ୍ଷିପ୍ତ ମୁହୂର୍ତ୍ତ ପାଇଁ ହେଉ ପଛେ, ଏଇ ଭାବନାକ୍ଷମ ମଣିଷର ସମଗ୍ର ଜୀବନ ବହ୍ନିକୁ ନେଇ ସେ ଜାଗି ଉଠି ପାରନ୍ତେ କି, ଆଉ ସୃଷ୍ଟିର ପ୍ରତ୍ୟେକ ବସ୍ତୁ ଭିତରେ ଆଣି ଦେଇ ପାରନ୍ତେ କି ଗୋଟାଏ ଶୃଙ୍ଖଳା, ଗୋଟାଏ ଅର୍ଥ ! ଗୋଟାଏ ମୁହୂର୍ତ୍ତ ପାଇଁ ହେଉ ପଛେ !

ଧୀରେ ଧୀରେ ସେ ପ୍ରବେଶ କଲେ ତମ୍ବୁ ଭିତରକୁ । ଶଯ୍ୟା ପ୍ରସ୍ତୁତ ହୋଇ ରହିଛି, ଜୀବନର ଉଷ୍ଣ ଶଯ୍ୟା, ପାଖେ ପାଖେ ସୁକୋମଳ ବୁକୁର ଆହ୍ୱାନ, ଅନାବୃତ ଅଙ୍ଗର ନିମନ୍ତ୍ରଣ । ଏ ନାରୀ ତାଙ୍କର, ଚିରଦିନ ପାଇଁ ତାଙ୍କର । ନିଜର ଦୁଇ ବଳିଷ୍ଠ ବାହୁ ପାଶର ଆଶ୍ଲେଷରେ, ଆଉ ଗୋଟିଏ ବର୍ଦ୍ଧିମାନ ଜୀବନର ନିବିଡ଼ ସ୍ପର୍ଶ । ଏକାକାର ହୋଇଗଲା ଦୁଇଟି ଓଠ ! ଏକାକାର ହୋଇଗଲା ଦୁଇଟି ଦେହ । ଧୀରେ ଧୀରେ ହଜି ହଜି ଗଲା ସମଗ୍ର ସୃଷ୍ଟିର ଚେତନା । ଏଇ ସର୍ବସ୍ୱାନ୍ତ ବିଲୁପ୍ତି ଭିତରେ ତାଙ୍କର ସେଇ ଅପସ୍ରିୟମାନ ଚେତନା ଭିତରେ କେବଳ ଜାଗି ଉଠିଲା ଗୋଟିଏ ନାମ, ତାଙ୍କର ପ୍ରେୟସୀର ନାମ, ଯେଉଁ ନାମଟା ଏପର୍ଯ୍ୟନ୍ତ ତାଙ୍କର ମନେ ପଡୁ ନଥିଲା । ସୁଦୂର ନକ୍ଷତ୍ରର ହିମଶୀତଳ ଶିହରଣକୁ ବିଦ୍ରୂପ କରି ଜାଗି ଉଠିଲା ସେହି ନାମ ।

